# ଜୀବନ ଭାଗବତ



ଡକ୍ଟର କୃତ୍ତିବାସ ନାୟକ

# ଜୀବନ ଭାଗବତ

❖ ନୀତି ଶିକ୍ଷାମୂଳକ ଆପ୍ତବାଣୀ ❖





ଡକ୍ଟର କୃତ୍ତିବାସ ନାୟକ



ଅରୁଣ-ତରୁଣ

ମହିମା ଗାଦି, ଢେଙ୍କାନାଳ



ISBN No. : 8187968-27-3



# ଜୀବନ ଭାଗବତ

ରଚନା : ଡକ୍ଟର କୃତ୍ତିବାସ ନାୟକ

ପ୍ରକାଶକ : ଅରୁଣ-ତରୁଣ
ମହିମା ଗାଦି, ଢେଙ୍କାନାଳ
ଫୋନ୍ : ୯୯୩୭୭୪୩୫୦୮

ପ୍ରଥମ ପ୍ରକାଶ : ୨୦୦୭

ମୁଦ୍ରଣ : ଜଗନ୍ନାଥ ପ୍ରୋସେସ୍ (ପ୍ରା) ଲିଃ., କଟକ-୨

ମୂଲ୍ୟ : ୫୦ଟଙ୍କା ମାତ୍ର ।



# JEEVAN BHAGABAT

*Author* : Dr. Krutibash Nayak

*First Edition* : 2007

*Price* : Rs. 50.00 (Rupees Fifty only)

# ବହି ସଂପର୍କରେ-

**-ପ୍ରଫେସର୍ ନିତ୍ୟାନନ୍ଦ ମିଶ୍ର**

ବରିଷ୍ଠ ସାହିତ୍ୟିକ ଓ ଶିକ୍ଷାବିତ୍

ଡକ୍‌ଟର କୃତ୍ତିବାସ ନାୟକ ଓଡ଼ିଆ ସାହିତ୍ୟ ଆକାଶର ଜଣେ ଜ୍ୟୋତିର୍ମୟ ପୁରୁଷ । ତାଙ୍କର ଲେଖନୀ ଅଜସ୍ରସ୍ରାବୀ । ସେ ବହୁ ଶିଶୁ କବିତା, ଶିଶୁ ଗଳ୍ପ, ଶିଶୁ ନାଟକ-ଏକାଙ୍କିକା ସହିତ ଦୁଇଟି ଉପନ୍ୟାସ, ଚାରିଟି ଗୀତି କବିତା ଓ ଗଳ୍ପ ସଂକଳନ ପ୍ରଭୃତିର ଯଶସ୍ୱୀ ସ୍ରଷ୍ଟା ।

କାବ୍ୟ ସାହିତ୍ୟ ଲେଖାଯିବାର ଉଦ୍ଦେଶ୍ୟ ସଂପର୍କରେ ପ୍ରାଚୀନ ଅଳଙ୍କାର ଶାସ୍ତ୍ରମାନଙ୍କରେ ଯାହା ଉଲ୍ଲେଖ ଅଛି, ତହିଁରୁ ଗୋଟିଏ ହେଲା- କାବ୍ୟଂ ଯଶସେ ଅର୍ଥକୃତେ ବ୍ୟବହାର ବିଦେ ଶିବେତରକ୍ଷତୟେ । ଅର୍ଥାତ କାବ୍ୟ ରଚନା ହୁଏ-ଯଶ ପ୍ରାପ୍ତିପାଇଁ, ଅର୍ଥାଗମ ପାଇଁ, ବ୍ୟାବହାରିକ ଜୀବନକୁ ସଶକ୍ତ କରିବା ପାଇଁ, ଅମଙ୍ଗଳ ନାଶ କରି ସତ୍ୟ ଶିବ ସୁନ୍ଦରର ପ୍ରତିଷ୍ଠା ପାଇଁ ଏବଂ ସମାଜର ମଙ୍ଗଳ ପାଇଁ ଓ ସମାଜରେ ଆତଯାତ ହେଉଥିବା ପ୍ରତ୍ୟେକ ବ୍ୟକ୍ତିଙ୍କ ଆବଶ୍ୟକତା ପୂରଣ ପାଇଁ ।

ଆଜିକାଲି କେତେକ ସାହିତ୍ୟ ଲେଖା ଯାଉଛି, ଯାହା ବ୍ୟକ୍ତି କୈନ୍ଦ୍ରିକ, ବୁଝିବା ଅସହଜ । ଡକ୍‌ଟର ନାୟକଙ୍କର ସମସ୍ତ ଲେଖାରେ ସାହିତ୍ୟିକ ଗୌରବ ଥିବା ସହିତ ସାମାଜିକ ପ୍ରତିବଦ୍ଧତା ମଧ୍ୟ ରହିଥିବାର ମୁଁ ଲକ୍ଷ୍ୟ କରିଛି । ଏହି ପୁସ୍ତକ ଜୀବନ ଭାଗବତ ସରଳ ଛନ୍ଦରେ ସମସ୍ତେ ବୁଝିପାରିବା ଭାଷାରେ ଲେଖା ଯାଇଛି । ଏହା ଲେଖକଙ୍କର ଋଦ୍ଧିମନ୍ତ ଜୀବନର ଅଜସ୍ର ଅନୁଭୂତି ସିଦ୍ଧ ଏବଂ ଆଶା ଦୀପ୍ତ ଏକ ଜ୍ଞାନ ପ୍ରବାହ ।

ସାଧାରଣ ମଣିଷର ଜୀବନ ତରୀ ଝଡ଼ ବିକ୍ଷୋଭିତ ସଂସାର ସାଗରରେ ଯେପରି ଅଚାନକ ଭାବରେ ଟଳ ମଳ ହୋଇ ବୁଡି

ନଯିବ, ଅଥଚ ନିଶ୍ଚିତ ଭାବରେ ସମସ୍ତ ବିପଦକୁ ଅତିକ୍ରମ କରି କୂଳରେ ଲାଗି ପାରିବ । ସେଇ ଲକ୍ଷ୍ୟରେ ଆପଣାର ସମାଜ ସଚେତନତା ପଣିଆରେ ଲେଖକ ଏକ ସେବାବ୍ରତୀ ଭାବରେ ଏହି ପୁସ୍ତକ ରଚନାରେ ଆତ୍ମସ୍ଥ ହୋଇଛନ୍ତି ।

ଗୋଟିଏ ଉଦାହରଣ ଦେବି, ଆମ୍ଭମାନେ ହୁଏତ ପଡ଼ିଛୁ- ଆତ୍ମାନଂ ରଥିନଂ ବିଦ୍ଧି, ଶରୀରଂ ରଥଂ ନେବତୁ । ଏହାକୁ ଡକ୍ଟର ନାୟକ ସରଳ ସାବଲିଳ ଭାବରେ ଅନୁସୃଜନ କରିଛନ୍ତି,ତାଙ୍କ ଶୈଳୀରେ ।

ମଣିଷ ଶରୀର ମାଟି ରଥଟିଏ
ଆତ୍ମା ସେ ରଥର ରଥୀ,
ପାଞ୍ଚଟି ଇନ୍ଦ୍ରୀୟ ଦ୍ରୁତଗାମୀ ଅଶ୍ୱ
ବୁଦ୍ଧି ତହିଁର ସାରଥୀ ।

ତା ସହିତ ବିଶେଷଣାତ୍ମକ ଭାବରେ ଲେଖିଛନ୍ତି-

ମନକୁ ଲଗାମ ଦିଏ ଯେଉଁ ନର
ବିବେକ ଦଉଡ଼ି ଧରି,
ବିଷୟ ତା ପାଇଁ ବିଷ ପ୍ରାୟ ହୁଏ
ଅମୃତ ପଡ଼ଇ ଝରି ।

ଜୀବନ ଭାଗବତ ପାଞ୍ଚ ଶବ୍ଦ ପଦରେ ରଚିତ । ଏହାର ଲାଳିତ୍ୟ ଭରା ପଦ ଗୁଡ଼ିକରେ ଜୀବନ ଉପଯୋଗୀ ଅନୁଭୂତିର ସଙ୍କେତ ସୁସ୍ପଷ୍ଟ । ଏଭଳି ପୁସ୍ତକ ରଚନା ପାଇଁ ଡକ୍‌ଟର ନାୟକଙ୍କୁ ଧନ୍ୟବାଦ ଜଣାଇବା ସହ ତାଙ୍କର କଲମ ଦୀର୍ଘଜୀବୀ ହେବା କାମନା କରୁଛି । ଆଶା, ଏହି ପୁସ୍ତକଟି ଘରେ ଘରେ ଆଦୃତ ହେବ ।

* ଶାନ୍ତିଛାୟା,
ଶାମା ଚରଣପୁର
ଢେଙ୍କାନାଳ

ଜୟ ଜଗନ୍ନାଥ ଜଗତର ନାଥ ଜୟ ଜଗତ ଜୀବନ,
ତୁମ୍ଭ କରୁଣାରେ ଏହି ଭାଗବତ କରୁ ଜଗତ କଲ୍ୟାଣ ।

ଜ୍ଞାନର ପ୍ରଦୀପ ଲିଭେନାହିଁ କେବେ-
ଅସରନ୍ତି ଘୃତ ଭରା,
ଜୀବନ ପଥରେ ଆଲୋକ ବର୍ତ୍ତିକା-
ପୁସ୍ତକ ଅମୃତ ଝରା । (୧)

ଜୀବନ ଗଠନେ ଦେଖାଉଛି ଗୀତା-
ଧର୍ମ କର୍ମ ଆଉ ଜ୍ଞାନ,
ଗୀତା ରସ ପାନ କରିଛି ଯେ ଜନ-
ଜୀବନ ତାହାର ଧନ୍ୟ ।(୨)

କେତେ ଗୁଣୀ ଜ୍ଞାନୀ ଲେଖି ଯାଇଛନ୍ତି-
ଅଭିଜ୍ଞତା, ନୀତିଶିକ୍ଷା,
ଚାଣକ୍ୟ ଲେଖିଲେ ସଂସ୍କୃତରେ ଯାହା-
ହେଲା ସେ ମାନବ ଦୀକ୍ଷା ।(୩)

ବ୍ୟାସ ବାଲମିକୀ ମହା ପୁରାଣରେ-
ଭରିଦେଲେ ଉପଦେଶ,
ଜଗନ୍ନାଥ ଦାସ ଭାଗବତ ବହି-
ଜାତିକୁ କରିଲା ବଶ ।(୪)

ଲକ୍ଷ୍ମୀ ପୁରାଣରେ ବଳରାମ ଦାସ -
ଦେଲେ ଯେ ମହତ ବାଣୀ,
ସେ ମହତ ବାଣୀ ପଢ଼ି ଶୁଣି ନାରୀ-
ହେଲେ ଖାଣ୍ଟି ଓଡ଼ିଆଣୀ ।(୫)

ଗଙ୍ଗାଧର କବି ରାଧାନାଥ ଆଉ-
ଭକ୍ତ କବି ମଧୁ ମିଶି-
କାବ୍ୟ କବିତାରେ ଜାଳି ଦେଇଗଲେ-
ଜ୍ଞାନ ଦୀପ ରାଶି ରାଶି ।(୬)

ଯୁଗ ଉପଯୋଗୀ ଭାଗବତ ବହି-
ଲେଖିବାକୁ ମନ କରି,
ଯେଉଁ ନୀତିକଥା ଯେଉଁଠୁ ପାଇଲି-
ଦେଉଛି ସେଥିରେ ଭରି ।(୭)

ନିଜ ଅଭିଜ୍ଞତା ମନୋବିଜ୍ଞାନକୁ-
କରୁଛି ଏଥିରେ ଯୋଗ,
ପୁରାଣ ସୁନୀତି ଦେଶ ଧର୍ମନୀତି-
ରଖୁଅଛି କିଛି ଭାଗ ।(୮)

ବିଜ୍ଞାନ ରହିଛି ପୃଷ୍ଠଭୂମି ହୋଇ-
ଜ୍ଞାନ ବିତରଣ ପାଇଁ,
ଯାହା ପରୀକ୍ଷିତ ବହୁ ଜନମତ-
ଅବଶ୍ୟ ଗ୍ରହଣ ହୋଇ ।(୯)

କବି ଭବଭୂତି ଲେଖିଥିଲେ ଚିନ୍ତି-
ବିପୁଳାଚ ପୃଥ୍ୱୀ ଏହି,
କେତେ ଯେ ଆସିବେ କେତେ ପୁଣି ଯିବେ-
କେହି ପାରିବେନି କହି ।(୧୦)

ପୁସ୍ତକ ରହିବ ଜ୍ଞାନ ବିତରିବ-
ପାଠକ ପାଠିକା ଖୋଜି,
ଆଗାମୀ ପୀଢ଼ିରେ ନିଶ୍ଚୟ ପଢ଼ିବେ-
ଯାହା ଲେଖା ହେଲା ଆଜି ।(୧୧)

କ୍ଷମା ମାଗିନେବି ଗୁଣୀ ଜନଠାରେ-
ଏହି ଦୁଃସାହସ ପାଇଁ,
ଭାଗବତ ପରି ପବିତ୍ର ନାମକୁ-
ବ୍ୟବହାର କଲି ମୁହିଁ ।(୧୨)

ନୀତିଶିକ୍ଷା ଗତି ଅତୀବ ପ୍ରବଳ-
ନାହିଁ ତାର ଆଦି ଅନ୍ତ,
ନିତି ନୂଆ କଥା ମିଶେ ତା ସାଥିରେ-
ଜାଣେ ଏକା ଭାଗ୍ୟବନ୍ତ ।(୧୩)

ଆମେରିକା ନେତା ଲିଙ୍କନ ଥରେ-
ଲେଖିଥିଲେ ଚିଠିଟିଏ,
ଚିନ୍ତା ଥିଲା ତାଙ୍କ କୁନି ପୁଅଟିକୁ-
ମଣିଷ କରିବ କିଏ ?(୧୪)

ସେହି ଚିଠିଟିକୁ ଗୁରୁଜୀ ପଢ଼ିଲେ-
ଭରିଥିଲା ଉପଦେଶ ।
ସେହି ଉପଦେଶ ହୋଇଗଲା ପୁଣି-
ଆମ ପାଇଁ ଇତିହାସ । (୧୫)

ପଣ୍ଡିତ ନେହେରୁ  ଝିଅପାଇଁ ଚିଠି -
ଲେଖୁଥିଲେ ବାର ବାର,
ସେହି ଚିଠି ମିଶି ପୋଥି ହୋଇଗଲା-
ଭାରତର ଆବିଷ୍କାର । (୧୬)

ଜୀବନ ଗଠନ ଭାଗବତ ଏହି-
ପଢ଼ିବେ ମହତ ଜନେ,
ନହେଉ ପଛକେ  ଇତିହାସ ଏହା-
ପଢ଼ିନେବ କେହି ଜଣେ । (୧୭)

ଶିଶୁ ବୁଝେନାହିଁ ନୀତିଶିକ୍ଷା ମୂଲ୍ୟ-
ବୃଦ୍ଧ ପାଇଁ ଅକାରଣ,
ଆଗ୍ରହୀ ପାଠକେ ଉପଯୁକ୍ତ ହେବେ-
ପାଇବାକୁ ଜ୍ଞାନଦାନ । (୧୮)

କେତେ କଳପନା କେତେ ଯେ ଭାବନା-
ମଣିଷର ମନେଥାଏ,
ସବୁତକ କେବେ ପୂରଣ ହୁଏନା-
କିଛି ବାକି ରହିଯାଏ । (୧୯)

ଘର କରିଥିଲେ କେତେ ଝଡ଼ ଝଞ୍ଜା-
ଆସଇ ଜୀବନ ପଥେ,
ଯିଏ ଲଢ଼ିପାରେ ଦୁଃଖ ବିରୁଦ୍ଧରେ-
ସିଏ ହିଁ ଜଗତ ଜିତେ । (୨୦)

ଦୁଃଖ ଯାତନାକୁ ନକରି ଖାତର-
ଅପେକ୍ଷା କରଇ ଯିଏ,
ସମୟ ତାହାକୁ ସଫଳତା ଦେଇ-
ମୁକୁଟ ପିନ୍ଧେଇ ଦିଏ ।(୨୧)

ଖରା ପରେ ସିନା ଆସଇ ବରଷା-
ଦୁଃଖ ପରେ ଆସେ ସୁଖ,
ସବୁ ରାତି ପରେ ଆସଇ ସକାଳ-
ପରିବର୍ତ୍ତନକୁ ଚାଖ । (୨୨)

ସନ୍ତୋଷରୁ ସିନା ମିଳିଥାଏ ଶାନ୍ତି-
କିନ୍ତୁ ଲକ୍ଷ୍ୟ ହୁଏ ଦୂର,
ଲକ୍ଷ୍ୟ ପୂରଣରେ ଲାଗି ରହିଥିଲେ-
ସଫଳତା ଆସେ ଘର । (୨୩)

ବଦଳିଛି ଯୁଗ ବଦଳିଛି ରୁଚି-
ବଦଳିଛି ରୀତି ନୀତି,
ଯୁଗର ସହିତ ତାଳ ଦେଉଥିବ-
ମନରେ ନରଖି ଭୀତି । (୨୪)

ଆମ ପରଂପରା ଆମରି ଐତିହ୍ୟ-
ଜଗତ ଭିତରେ ସାର,
ତାକୁ କେବେ ହେଲେ କରିବନି ହେଳା-
ପାରିଲେ ସଂସ୍କାର କର । (୨୫)

ଆଧୁନିକ ଅର୍ଥ ସ୍ୱେଚ୍ଛାଚାର ନୁହେଁ-
ମାନିବ ଲକ୍ଷ୍ମଣ ଗାର,
ସୀମାରେ ରହିଲେ ସମାଜ ଆଖିକୁ-
ଦିଶିବ ସବୁ ସୁନ୍ଦର । (୨୬)

ଆମରି ଜିଭରେ ରହିଛି ଅମୃତ-
କୋମଳ ବିନୟ ବାଣୀ,
ବଙ୍କେଇ କହିଲେ ମରମକୁ ଭେଦେ-
ତାହା ବିଷ ହୁଏ ପୁଣି ।(୨୭)

ଚିନ୍ତା ଆସେ ନିଜ ମନର ଭିତରୁ-
ଚିନ୍ତାରୁ ଜନମେ ଦୁଃଖ,
ସେହି ଚିନ୍ତା ପୁଣି ଚେତନା ଯୋଗାଏ-
ବଦଳିଲେ ଦିଏ ସୁଖ ।(୨୮)

ସୁଖବେଳେ ନିଶ୍ଚେ ରଖିବ ଆଶଙ୍କା-
ଦୁଃଖ ଆଣିପାରେ ସେହି,
ଦୁଃଖବେଳେ ପୁଣି ଆଶା ରଖିଥିବ-
ସୁଖ ରହିଛି ଅନାଇ ।(୨୯)

ପର ଦୁଃଖ କଥା ଦୁଃଖୀଜନ ବ୍ୟଥା-
ଶୁଣିବ ଧଇର୍ଯ୍ୟ ଧରି,
ଅଳପ କଥାରେ ସୁବିଚାର ଦେବ-
ମନକୁ ଆୟତ୍ତ କରି ।(୩୦)

ବହୁ ସୁପୁରୁଷ ମହିୟସୀ ନାରୀ-
ଲେଖିଛନ୍ତି ଆତ୍ମକଥା,
ଅବସର ଦେଖି ପଢ଼ିଲେ ତାହାକୁ-
ପାଇବ ଅନେକ ପନ୍ଥା ।(୩୧)

ଅପ୍ରକଟ ରାଗ ଅସହନଶୀଳ -
ପ୍ରାଣୀର କରଇ କ୍ଷତି,
ସଂଯମେ ତାହାକୁ ଦମନ କରିଲେ-
ନିଜର ହୁଏ ଉନ୍ନତି ।(୩୨)

ଈର୍ଷାଭାବ ଏକ ଦିଆସିଲି କାଠି-
ଜାଳିବା ଆଗରୁ ଜଳେ,
ପରଶ୍ରୀକାତର ମଞ୍ଜି ଗଛ ହେଲେ-
ବିପରୀତ ଫଳ ଫଳେ ।(୩୩)

ଉଦାସ ଭାବନା ହତାଶ ଚେତନା-
ମନବଳ ଭାଙ୍ଗିଦିଏ,
ସେତେବେଳେ ବିଶ୍ୱ ନିୟନ୍ତା ଚିନ୍ତିବ-
ରକ୍ଷା କରିଦେବେ ସିଏ ।(୩୪)

ସୋଦର ପରାଏ ଭଲ ପଡ଼ୋଶୀଟି-
ଭାଗ୍ୟବଳେ ମିଳିଥାଏ,
ଆମେ ଯଦି ନିଜେ ଭଲ ହୋଇଥିବା-
ଖରାପ ବି ଭଲହୁଏ ।(୩୫)

କ୍ଷମା ଦାନଠାରୁ ମହତ ପଣିଆ-
ଆଉ କିଛି ବଡ଼ ନାହିଁ,
କ୍ଷମା କରିଥିଲେ କ୍ଷମା ମିଳିଥାଏ-
କ୍ଷମାର ମହିମା ଏହି ।(୩୬)

ଖଳଲୋକ ଠାରୁ ଦୂରେଇ ରହିବା-
ଦୂରୁ ତାଙ୍କୁ ନମସ୍କାର,
ପଣ୍ଡିତ ଜନଙ୍କୁ ପଚାରି ବୁଝିବା-
ଯେତେ ଯାହା ଦରକାର ।(୩୭)

ବଡ଼ଙ୍କୁ ପଚାରି ସାନଙ୍କୁ ବିଚାରି-
ପରଶୁଥିବ ଭୋଜନ,
ପକ୍ଷପାତ ଭାବ ମନେ ନରଖିଲେ-
ହୋଇବ ପ୍ରୀତି ଭାଜନ ।(୩୮)

ପ୍ରିୟ ଜନ ବୋଲି ଆଦରିବ ତାଙ୍କୁ-
ଆନନ୍ଦ ଯାହାର ମନ,
ସୁଖରେ ଦୁଃଖରେ ଲୋଡ଼ିବ ତାହାକୁ-
ନଦେଉ ପଛକେ ଧନ ।(୩୯)

ପୁଣ୍ୟବାନ ଲୋକ ଆସିଲେ ଜୀବନେ-
ପ୍ରସନ୍ନ କରିବ ଚିତ୍ତ,
ପ୍ରସନ୍ନତା ବଳେ ଅରଜିବ ତୁମେ -
ପୁଣ୍ୟବାନ ଧର୍ମ ବିତ୍ତ ।(୪୦)

ପାପୀ କୋପୀ ଆଉ ଖଳବୁଦ୍ଧି ଲୋକ-
ଆସିବେ ଚଲା ପଥରେ,
ସାବଧାନେ ତାକୁ ଉପେକ୍ଷା କରିବ-
ପାତଞ୍ଜଳିଙ୍କ ମତରେ ।(୪୧)

ପ୍ରକୃତି ହେଉଛି ପ୍ରଥମ ଶିକ୍ଷକ-
ସକଳ କାମ ଶିଖାଏ,
ଆକାଶ ସାଗର ପର୍ବତ ଜଙ୍ଗଲ-
ଜୀଇଁବା ଶିଖାଇ ଦିଏ ।(୪୨)

ସୂର୍ଯ୍ୟ ପରି ତୁମେ ତେଜିୟାନ ହେବ-
ଚନ୍ଦ୍ରମା ପରି ଶୀତଳ,
ପୃଥିବୀର ପରି ସହିବ ଯାତନା-
ଆକାଶ ପରି ନିର୍ମଳ ।(୪୩)

ଟିକି ତାରା ପରି ମିଟି ମିଟି କରି-
ଦେଖାଉ ଥିବ ଆଲୋକ-
ଫୁଲଟିଏ ପରି ଜଗତ ମୋହିବ-
ବିତରି ଦେଇ ମହକ ।(୪୪)

ଚଢ଼େଇଟି ପରି ଗାଉଥିବ ଗୀତ-
ମୟୂର ପରି ନାଚିବ,
ପାହାଡ଼ର ପରି ଟାଣ ମନ କରି-
ଝରଣା ପରି ବହିବ ।(୪୫)

ଜଳ ଦେବା ପାଇଁ ବାଦଲର ପରି-
ଆକାଶେ ଯାଇ ଭାସିବ,
ଗଛଟିଏ ପରି ନିଜେ ଠିଆ ହୋଇ-
ସବୁରିକୁ ଛାଇ ଦେବ ।(୪୬)

ସାଗର ପରାଏ ମନ ବଡ଼ କରି-
କାହାରି କିଛି ନେବନି,
ମାଆଟିଏ ପରି ସଭିଙ୍କୁ ଆଦରି-
କାହାକୁ ଦୁଃଖ ଦେବନି ।(୪୭)

ନାରୀଟିଏ ଝିଅ ଭଉଣୀ ରୂପରେ-
ହସି ଖେଳି ବଢ଼ିଥାଏ,
ସେହି ନାରୀ ପୁଣି ପତ୍ନୀ ରୂପ ନିଏ-
ଜନନୀର ସ୍ନେହ ଦିଏ ।(୪୮)

ନାରୀର ହାତରେ ଗଢ଼ା ଏ ମଣିଷ-
ନାରୀ ମମତା ଜୀବନ,
ନାରୀର ବିହୁନେ ସୁନ୍ଦର ସଂସାର-
ହୋଇବ ପୁରୁଷ ଶୂନ୍ୟ ।(୪୯)

ନାରୀ ହୋଇ ନିଜେ ନାରୀକୁ ସମ୍ମାନ-
ଦେଉଥିବ ଯଥାକାଳେ,
ପର ନାରୀ ବୋଲି କୁତ୍ସିତ ବର୍ଣ୍ଣନା-
କରିବନି କେତେବେଳେ ।(୫୦)

ସଫଳ ମଣିଷ ହୋଇବା ଅପେକ୍ଷା-
ରଖ ମଣିଷ ପଣିଆ,
ମୂଲ୍ୟବୋଧ ଥିବା ମଣିଷ ଗୋଟିଏ-
ଖୋଜୁଛି ଏହି ଦୁନିଆ ।(୫୧)

ଜଣେ ନାରୀ ଯଦି ନୀତିବ୍ରତା ହୋଇ-
ସୁନୀତି ଆହୁଲା ଧରେ,
ଶିକ୍ଷା ଧନ ମାନ ସମୃଦ୍ଧି ସମ୍ମାନ-
ବଢ଼ଇ ତାହାର ଘରେ ।(୫୨)

ନୀତି ଶିକ୍ଷା ପଢ଼ି ଅସଲ ବେଳରେ -
କାର୍ଯ୍ୟେ ଲଗାଇବ ଯିଏ,
ଜୀବନ ଯାତ୍ରାର ପ୍ରତି ପାଦେ ନିଷ୍ଠେ-
ସୁଫଳ ପାଇବ ସିଏ ।(୫୩)

ଶତ ବୀର ଥିଲେ କଉରବ ବଂଶେ-
ଗଲେ ସବୁ ନାଶ ହୋଇ,
ଧର୍ମ ପକ୍ଷ ନେଇ ଶାସନ କରିଲେ-
ପଣ୍ଡୁ ବଂଶ ପାଞ୍ଚ ଭାଇ ।(୫୪)

ଏକ ମାତ୍ର ଚନ୍ଦ୍ର ଅମା ଅନ୍ଧକାର-
କରି ଦେଇଥାଏ ନାଶ,
ଲକ୍ଷେ ତାରା ଉଇଁ କି କାର୍ଯ୍ୟେ ଆସଇ-
ଆକାଶରେ ଖାଲି ବାସ ।(୫୫)

ପିତା ମାତା ଗୁରୁ ଦେବତା ବ୍ରାହ୍ମଣେ-
ଜୁହାରିବ ଆଣ୍ଠୁମାଡ଼ି,
ସାଙ୍ଗ ସାଥୀ ବନ୍ଧୁ ଆନ ଗୁରୁଜନେ-
ନମସ୍କାର ହାତ ଯୋଡ଼ି ।(୫୬)

ମଧୁର ବଚନ ଭୂମିଷ୍ଠ ପ୍ରଣାମ-
ସଭିଙ୍କୁ କରାଏ ବଶ,
ଧନ ଜନ ମାନ ତିଳେ ସରେ ନାହିଁ-
ମନରେ ଫୁଟାଏ ହସ ।(୫୭)

ଦୁନିଆ ହାଟରୁ ମଣିଷ ଚିହ୍ନିବା-
ଶିଖିନେବ ସାବଧାନେ,
ଆତୁରୀ ଚତୁରୀ ତୋଷାମଦକାରୀ-
କଥାରେ ମନକୁ କିଣେ ।(୫୮)

ପରନିନ୍ଦା କହି ଦିଅନ୍ତି ସଫେଇ-
ନଥାଏ ଧର୍ମ ବିଚାର,
ପାଇବା ଲାଳସା ସ୍ୱାର୍ଥ ପାଇଁ ବ୍ୟସ୍ତ-
ନିଜ କଥା ଆଗୁସାର ।(୫୯)

ଟିକେ ମାତ୍ର ନିଜ ସ୍ୱାର୍ଥହାନୀ ହେଲେ-
ମାରନ୍ତି ଏମାନେ ଚୋଟ,
ଉପେକ୍ଷା କରିବ ଉତ୍ତର ନଦେବ-
ନିରବତା ଭଲ ବାଟ ।(୬୦)

ସୁବିଧାବାଦୀ ଯେ ଡଙ୍ଗା ବୁଡ଼ିବେଳେ-
ଗାଧୋଉ ଥିଲି ମୁଁ କହେ,
ସୁଖବେଳେ ସାଥୀ ଭାଗ ଖୋଜୁଥାଏ-
ଦୁଃଖବେଳେ ଲୁଚି ରହେ ।(୬୧)

ଲୁଚି ଲୁଚି ଯିଏ ଚାହୁଁଥାଏ ପୁଣି-
ତଳକୁ ଅନାଇଁ ହସେ,
ଠାରି ଦେଉଥାଏ କାନେ କହୁଥାଏ-
ସିଏ ନିଜେ ନିଜେ ଫସେ ।(୬୨)

କଟୁଭାଷୀ ଥୋକେ ମଣିଷ ଅଛନ୍ତି-
ଜାଣନ୍ତିନି ଶାଳୀନତା,
ସେ ଭାଷାରେ ଥାଉ ବିଷ ପରିଣତି-
ନଥାଏ ତାଙ୍କର ଚିନ୍ତା ।(୬୩)

ଆଉ ଥୋକେ ଲୋକ କଳପନା ବଳେ-
ତିଳକୁ କରନ୍ତି ତାଳ,
କୁଆ ଉଡ଼ିଗଲେ ଛୁଆ ଗଲା କହି-
ସାପକୁ କହନ୍ତି ମାଳ ।(୬୪)

ନେଉଥିବା ଯାଏ ଖାଉଥିବାଯାଏ-
ଭଲଭଲ କହୁଥିବେ,
ପାନରୁ ଟିକିଏ ଚୂନ ଖସିଗଲେ-
ବଦନାମ କରିଦେବେ ।(୬୫)

ଦମ୍ଭ ଦେଖାଇଲେ ଏଭଳି ଲୋକଙ୍କୁ-
କହିବେ ଡରୁଛି ମୋତେ,
କ୍ଷମା କରିଦେଲେ ସୁବିଧା ଦେଖିକି-
ପଛରୁ ମାରିବେ ନାତେ ।(୬୬)

କୁହାଳିଆ ବନ୍ଧୁ ଅନେକ ଯୁଟିବେ-
କହିବେ ମଧୁର କଥା,
ଦୁର୍ବଳ ମୁହୂର୍ତ୍ତ ଅସୁବିଧା ବେଳେ-
ନୁଆଁଇବେ ଆମ ମଥା ।(୬୭)

ଭଲ ପାଇବାର ଲକ୍ଷଣ ଜାଣିବ-
ତ୍ୟାଗ କିଏ କେତେ କରେ,
ପାଇବାର ଆଶା ରହିଲେ ମନରେ-
ଭଲ ପାଇବାଟା ହାରେ ।(୬୮)

ଦୁର୍ଜନେ କହନ୍ତି ଚନ୍ଦ୍ର ମହାପାପୀ-
କଳଙ୍କ ଯାଇଛି ଖାଇ,
ସୁଜନେ କହନ୍ତି ଜହ୍ନକୁ ସୁନ୍ଦର-
ଧଳା ମୁଖେ କଳା ଜାଇ ।(୬୯)

ଆକାଶ ସାଗର ପାହାଡ଼ ପର୍ବତ-
ଯେତେ ବଡ଼ ଉପାଦାନ,
ନୀରବେ ସେମାନେ ସାଧନାରେ ରତ-
ଦେଖ ତାଙ୍କ ଶାନ୍ତ ଗୁଣ ।(୭୦)

କହୁଥିବା ଲୋକ ବଡ଼ ହୁଏ ନାହିଁ-
ବଡ଼ ହିଁ ସହିବା ଲୋକ,
ସହିବା ଶକତି ନାହିଁ ଯାହାଠାରେ-
ଜୀବନ ତାହାର ଧିକ ।(୭୧)

ବିପଦେ ଆପଦେ ଅଧୈର୍ଯ୍ୟ ନହୋଇ-
କି ଘଟୁଛି ଦେଖିନେବ,
ଅଳପ ଦିନରେ ବଦଳି ଯିବ ସେ-
ବିପଦ ସଂପଦ ହେବ ।(୭୨)

ଜୀବନ ସଂଗ୍ରାମେ ଧୈର୍ଯ୍ୟ ଏକ ଅସ୍ତ୍ର-
ତାଲ ଆତ୍ମରକ୍ଷା ପାଇଁ,
ଧୈର୍ଯ୍ୟବାନ ଏକା ଜିତଇ ଜଗତେ-
ସଂଜୀବନୀ ମନ୍ତ୍ର ଗାଇ ।(୭୩)

ଶ୍ରଦ୍ଧାବାନ ସଦା ଲଭଇ କଲ୍ୟାଣ-
ଶ୍ରଦ୍ଧାରୁ ମିଳଇ ଜ୍ଞାନ,
ଶ୍ରଦ୍ଧା ସଞ୍ଚରଇ ଶିଶୁର ମନରେ-
କଲେ ଶ୍ରଦ୍ଧା ଶିକ୍ଷା ଦାନ ।(୭୪)

ଶ୍ରଦ୍ଧାର ସହିତ ବ୍ୟବହାର କଲେ-
ସନ୍ତୋଷ ମିଳେ ଅପାର,
ଅଶ୍ରଦ୍ଧା ବଢ଼ାଏ ଅସନ୍ତୋଷ ଦୁଃଖ-
ସଭିଏ ଲାଗନ୍ତି ପର ।(୭୫)

ଚନ୍ଦନ ଲିପିଲେ ଶୀତଳତା ପାଇଁ-
ହୋଇପାରେ ସନ୍ନିପାତ,
ନିଆଁ ପୁଆଁ ବେଳେ ଅସାବଧାନରେ-
ହୋଇପାରେ ମହାଘାତ ।(୭୬)

ସନ୍ତାନର ସୁଖ ଲଭିବା ଆଗରୁ-
ବଢ଼ାଇବ ଗଛଟିଏ,
ପତ୍ର ଫୁଲ ଫଳ ଦେଖିଲେ ତାହାର-
ସବୁ ସୁଖ ମିଳିଥାଏ ।(୭୭)

ବାଡ଼ି ବଗିଚାରେ ଶାଗ ପଟାଳିଟି-
କରିଥିବ ଯତନରେ,
କଞ୍ଚା ଲଙ୍କା ଆଉ ବାଇଗଣ ଥିଲେ-
କି କାର୍ଯ୍ୟ ସେ ବଜାରରେ ?(୭୮)

ବଳକା ପାଣିକୁ ଛାଡ଼ିବ ବାଡ଼ିକୁ-
ଗଛ ସତେଜ ରହିବ,
ବଳକା ଖାଦ୍ୟକୁ ଫୋପାଡ଼ି ନଦେଇ-
ଗାଈ ଗୋରୁଙ୍କୁ ଖୋଇବ ।(୭୯)

ଆଜିର କାମକୁ ଏବେ କରିନେବ-
କାଲିକୁ ନଥିବ ବାକି,
କାଲିର କାମକୁ ଆଜି କରିନେଲେ-
ସଦା ରହିଥିବ ସୁଖୀ ।(୮୦)

ଖାଇବା ଶୋଇବା ନିୟମ ଜାଣିଲେ-
କମେ ରୋଗ ବଇରାଗ,
ସୁଠାମ ନୀରୋଗ ରହିବ ଶରୀର-
କଲେ ପ୍ରାଣାୟମ ଯୋଗ ।(୮୧)

ସୁବିଧା ମିଳିଲେ ଶିଖିବ ପହଁରା-
ବଢ଼ିଆ ସକାଳ ଚାଲି,
ସମୟ ମିଳୁନି କହିବନି କେବେ-
ଆରମ୍ଭ କରିବି କାଲି ।(୮୨)

ପାଟିକୁ ସୁଆଦ ଅଧିକ ମସଲା-
ରାଗ ମିଠା ଆଉ ଖଟା,
ତେଲ ଘିଅ ଚିନି ପେଟ ପୂରା ଖାଦ୍ୟ-
ପରେ କରେ ହଟହଟା ।(୮୩)

ଅଧିକ ଗରମ ଅଧିକ ଶୀତଳ-
ପଚା ସଢ଼ା ଖାଦ୍ୟ ବିଷ,
ଅଇଁଠା କାହାର ଖାଇବନି କେବେ-
ଖୋଇଲେ ଲାଗିବ ଦୋଷ ।(୮୪)

ନିଜ ଦେହ ବ୍ୟଥା କାରଣ ଜାଣିଲେ-
ସହଜେ ଛାଡ଼ଇ ରୋଗ,
ମଶା ଧୂପଠାରୁ ମଶାରୀ ବଢ଼ିଆ-
ସୁଖ ନିଦ୍ରା ହୁଏ ଭୋଗ ।(୮୫)

ମାତୃଭାଷା ଏକା ପ୍ରକଟ କରଇ-
ହୃଦୟ କନ୍ଦର ଭାବ,
ମାତୃଭାଷା ପୁଣି ଦିଅଇ ଭରସା-
ପୂରଣ କରେ ଅଭାବ ।(୮୬)

ଶିଖ ଯେତେ ଭାଷା ବିଜ୍ଞାନ କୌଶଳ-
ଥାଉ ପଛେ ଯେତେ ଗୁଣ,
ମାତୃଭାଷା ପ୍ରତି ଅବହେଳା କଲେ-
ସବୁହେବ ଅକାରଣ ।(୮୭)

ସତ୍ୟ ଚିରନ୍ତନ ନିଶ୍ଚିତ ପ୍ରାପ୍ତିକୁ-
କରିବନି ହତାଦର,
ଅନିଶ୍ଚିତ ସଦା ଆଣଇ ହତାଶା-
ନିଶ୍ଚିତକୁ କରି ଦୂର ।(୮୮)

ଦେଶର ଚଳଣି ଆଇନକୁ ସଦା-
ଦେଉଥିବ ସନମାନ,
ନିୟମକୁ ମାନି ଚଳୁଥିଲେ କେବେ-
ମିଳେନାହିଁ ଅପମାନ ।(୮୯)

ଜଣା ଅଜଣାରେ ତ୍ରୁଟି କରିଥିଲେ-
କରିନେବ ସଂଶୋଧନ,
କ୍ଷମା ମାଗିନେଲେ ସମ୍ମାନ ଯାଏନା-
ବଢ଼ିଥାଏ ସ୍ୱାଭିମାନ ।(୯୦)

ଧନ୍ୟବାଦ ଦେବା ଉଦ୍ଯମିରେ ଗଣା-
ସରିଯାଏ ନାହିଁ କିଛି,
କୃତଜ୍ଞତା ପୁଣି ଜଣାଇବ ତାକୁ-
ଦାତା ଗୁଣୀଜନ ବାଛି ।(୯୧)

ମିତ ବ୍ୟୟୀ ସଦା ସୁଖୀ ହୋଇଥାଏ-
ନଥାଏ କରଜ ଦୁଃଖ,
ପିଠଉ ଦେଖିକି ପିଠା କରୁଥିଲେ-
ସନ୍ତୋଷରେ ମିଳେ ସୁଖ ।(୯୨)

ଶତ୍ରୁବୋଲି ଯିଏ ପରିଚିତ ହେଲା-
ପୁଣି ସିଏ ହେଲେ ମିତ୍ର,
ଧନ ମାନ ପରେ ଜୀବନ ନେବ ସେ-
ଏକଥାଟି ପରୀକ୍ଷିତ ।(୯୩)

କାନ କୁହାକଥା ନିଜର ପ୍ରଶଂସା-
ପରନିନ୍ଦା ଶୁଣିବନି,
ଅପାତ୍ରରେ ଦାନ ଟାଙ୍ଗରେ ବିହନ-
କେବେହେଲେ ବୁଣିବନି ।(୯୪)

ଅନ୍ଧ ସେହି ଏକା ନିଜ ଦୋଷ ଯିଏ-
ଦେଖି ଜାଣିପାରେ ନାହିଁ,
କାଲ ସେହି ଜଣେ ଯିଏ ହିତକଥା-
ଶୁଣେ ନାହିଁ କାନ ଥାଇ ।(୯୫)

ଧନ ଜନ ମାନ ସମ୍ମାନ ଯଶର-
ନାହିଁ ସୀମା ସରହଦ,
ଏହି ପାଞ୍ଚଗୋଟି ଅଧିକ ଚାହିଁଲେ-
ଜଳାଏ ଆପଣା ହୃଦ ।(୯୬)

ସମ୍ଭାଷଣ ଦୋଷ ଚାରି ଗୋଟି ଯାହା-
କହୁଛି ରଖିବ ମନେ,
ଆଦେଶ ଚିତ୍କାର ଅଶାଳୀନ କଟୁ-
ଭାଷା ହିଁ ହୃଦୟ ହାଣେ ।(୯୭)

ହିତ ମିତ ଶାନ୍ତ ମଧୁର ଭାଷାରେ-
କିଣି ହୁଏ ପ୍ରାଣୀ ମନ,
ବିନୟ ବଚନେ ରୋଗୀ ଯୋଗୀ ରାଗୀ-
ଲଭଇ ନବ ଜୀବନ ।(୯୮)

ଆଚରଣେ ନିଜ ପରିଚୟ ମିଳେ-
କେତେ ବଡ଼ ଲୋକ ତୁମେ,
ଅଳପ କଥାରେ ମଧୁର ଭାଷାରେ-
ପ୍ରିୟପାତ୍ର ହେବା ଆମେ ।(୯୯)

ଯାହାକୁ ଜୀବନେ ଆଦର୍ଶ ଭାବିଛ-
ଗ୍ରହଣ କର ତା ଗୁଣ,
ଗୁଣୀ ଜନଠାରେ ଦଶଦୋଷ ଥିଲେ-
କରିବ ନାହିଁ ଗ୍ରହଣ ।(୧୦୦)

ସ୍ୱର୍ଗରୁ କିଏସେ ଆସିଛି ଜାଣିବ-
ହସ ହସ ମୁହଁ ତାର,
ନର୍କବାସୀ ସେହି ଫେରିଛି ଚିହ୍ନିବ-
କାନ୍ଦୁରା ମୁହଁଟି ଯାର ।(୧୦୧)

ଦାନରେ ବଢ଼ଇ ଧନର ମହତ୍ତ୍ୱ-
ସେବାରେ ପୁଣି ଶରୀର,
କଥାର ମହତ୍ତ୍ୱ ବଢ଼ିଥାଏ ସିନା-
ଭାଷାଟି ଥିଲେ ମଧୁର ।(୧୦୨)

ମିଳିତ ଭାବରେ ଆସିଲେ କ୍ଷେତ୍ରକୁ-
ଯୋଜନା ହୁଏ ଆରମ୍ଭ,
ମିଳିତ ଭାବରେ ରହିଲେ ସଭିଏ-
ମନରେ ଆସିବ ଦମ୍ଭ ।(୧୦୩)

ମିଳିତ ଭାବରେ କରିଲେ କାମଟି-
ନିଶ୍ଚୟ ହେବ ସଫଳ,
ମିଳିତ ଭାବରେ ଲଢ଼ିଲେ ଦେଖିବ-
ହାର ମାନିଯିବ କାଳ ।(୧୦୪)

ଭଲ କାମଟିକୁ ନଦେଖିଲେ କେହି-
ସମୟ ଦେଖିବ ଦିନେ,
ଭଲ ଲୋକଟିକୁ ଖୋଜି ଖୋଜି ପୁଣି-
ପାଇଯିବ କେହି ଜଣେ ।(୧୦୫)

ସଂସାରେ ବଦଳେ ସବୁ ଉପାଦାନ-
ଜନମଇ ଯିଏ ମରେ,
ଗଢ଼ା ହୋଇଥିବା ସୁନ୍ଦର ଦରବ-
ଭାଙ୍ଗି ଦିନେ ଝଡ଼ି ପଡ଼େ ।(୧୦୬)

ଛୋଟିଆ ହେଲେ ବି ଶତ୍ରୁକୁ କଦାପି-
ହେୟ ମନେ କରିବନି,
ସେହି ହେୟଜ୍ଞାନ ପରାଭବ ଦେବ-
ପାଇ ମୃତ ସଂଜୀବନୀ ।(୧୦୭)

ସୁଖୀ ପରିବାର ଚିହ୍ନିବ ଯା ଘରେ-
ମିଶି ଗୀତ ଗାଉଥିବେ,
ପିତା ମାତା ସଙ୍ଗେ ଗୁରୁଜନ ମିଶି-
ପିଲାମାନେ ଖାଉଥିବେ ।(୧୦୮)

ଦୁଃଖୀ ପରିବାର ଜାଣିବ ଦେଖିଲେ-
ଲାଗିଥିବ ଘରେ କଳି,
ପିଲାଙ୍କ ଆଗରେ ପିତା ମାତା ଦୁହେଁ-
ଲାଗୁଥିବେ ମାଡ଼ ଗାଳି ।(୧୦୯)

ଆଳସ୍ୟ ପଣରେ ପତିର ସେବାରେ-
ଲଗାଏ ଯେ ପରନାରୀ,
ଜାଣିବ ନିଶ୍ଚୟ ଆସୁଛି ବିପଦ-
ତାର ସାଙ୍ଗ ସାଥୀ ଧରି ।(୧୧୦)

ସୋଦର ହେଲେବି ଯୁବତୀ ଯୁବକ-
ରହିବ ନାହିଁ ନିର୍ଜନେ,
ପତି ପତ୍ନୀଙ୍କର ହେଲେ ମତାନ୍ତର-
ରହିବ ଟିକେ ମଉନେ ।(୧୧୧)

ଧନ ରୋଜଗାର ସବୁଠୁ ସହଜ-
ଖରଚ କରିବା କଷ୍ଟ,
କିଛି ଧନ ସିନା ହୁଏ ବିନିଯୋଗ-
ଦେଖ କେତେ ହୁଏ ନଷ୍ଟ ।(୧୧୨)

ଅତି ଦରକାରୀ ଆତ୍ମ ବିଶ୍ୱାସକୁ-
ବଢ଼ାଇ ରଖିବ ମନେ,
ଅତି ଶକ୍ତିଶାଳି ଜ୍ଞାନ ଶବ୍ଦଟିଏ-
ବଢ଼ାଇବ ଆଦରଣେ ।(୧୧୩)

ଅତି ଛୋଟ ବୋଲି ଈର୍ଷା ଶବ୍ଦଟିକୁ-
ମନେ ରଖିଥାଏ ଯିଏ,
ଅତି କଷ୍ଟ ସାଧ୍ୟ ସଫଳତା ଶବ୍ଦ-
ହାସଲ କରଇ ସିଏ ।(୧୧୪)

ଅତି ଶୀଘ୍ର ବ୍ୟାପେ ଗୁଜବ ଶବ୍ଦଟି-
ଉପେକ୍ଷା କରିବ ତାକୁ,
କିଣିବା ନାହିଁ ସେ ଗୁଜବ ଦରବ-
କିଏ ବିକୁଅଛି ବିକୁ ।(୧୧୫)

ଆନନ୍ଦ ଦାୟକ ସ୍ମିତ ହାସ୍ୟ ଶବ୍ଦ-
ସାଇତି ରଖ ଯତନେ,
ଅତି ବିଷଭରା ଅହଂ ଶବ୍ଦଟିଏ-
କାଡି ନେବ ନିଜ ଗୁଣେ ।(୧୧୬)

ସନ୍ତୋଷ ଦାୟକ ଆମେ ଶବ୍ଦଟିକୁ-
କରୁଥିବ ବ୍ୟବହାର,
ଅତି ସ୍ୱାର୍ଥପର ମୁହିଁ ଶବ୍ଦଟିଏ-
ତାକୁ କର ପରିହାର ।(୧୧୭)

ସକଳ ସୁଖର ଆଧାର ଅମୃତ-
ସର୍ବଜନ ପାଇଁ ଦୀକ୍ଷା,
ପ୍ରଜପିତା ବ୍ରହ୍ମା ଦଶଟି ଅତିକୁ-
କରି ଅଛନ୍ତି ସମୀକ୍ଷା ।(୧୧୮)

ମୂର୍ଖକୁ ଦର୍ଶନ ଅନ୍ଧକୁ ଦର୍ପଣ-
କାଲକୁ ମଧୁର ସୁର,
ଦେଖାଶୁଣା ପାଇଁ କସରତ କଲେ-
ସମୟ ସରିବା ସାର ।(୧୧୯)

ସେବାକାରୀ ଯଦି କଟୁ କଥା କହି-
ମୁହଁରେ ଜବାବ ଦେଲା,
ଜଗୁଆଳି ହେଇ ରାତିରେ ଶୋଇଲା-
କାମରେ ମାରିଲା ଢ଼ିଲା ।(୧୨୦)

ସସମ୍ମାନେ ତାଙ୍କୁ ବିଦା କରିବାକୁ-
ଆୟୋଜନ କରୁଥିବ,
ନିଜଠାରୁ ସାନ ସହିତ କଦାପି-
ଯୁକ୍ତି ତର୍କ ନକରିବ ।(୧୨୧)

ଯାହା ଦେଖି ହୁଏ ଦେଖାଇ ବି ହୁଏ-
ଜଣା ପଡ଼େ ତା କାରଣ,
ଅନୁମାନ କଥା ଚଳେନାହିଁ ଯହିଁ-
ତାକୁ କହନ୍ତି ବିଜ୍ଞାନ ।(୧୨୨)

କଳପନା ବଳେ କଳେ କଉଶଳେ-
ରଙ୍ଗ ହୋଇଯାଏ ବୋଲି,
ଭ୍ରମ କିବା ମାୟା ମୋହ ବଶ ହେଲେ-
ମିଛ ଲାଗେ ସତ ଭଳି ।(୧୨୩)

ଦେବତା ପ୍ରସନ୍ନ ସ୍ୱପ୍ନାଦେଶ ନାମେ-
ଶୁଣିବ ଆଶ୍ଚର୍ଯ୍ୟ କଥା,
ସେସବୁ ଭେଲିକି ପରେ ଜଣା ପଡ଼େ-
ସତ ହୋଇଯାଏ ମିଥ୍ୟା ।(୧୨୪)

ରୋଗ ପାଇଁ କେବେ ଗୁଣି ଗାରେଡ଼ିକୁ-
କରିବ ନାହିଁ ଭରସା,
ରୋଗର ଗୁରୁତ୍ୱ ଦେଖି ଚିକିତ୍ସକ-
ଦେଖାଇ ନେବ ସହସା ।(୧୨୫)

ଖାଇବା ଲୋଭରୁ ଧରା ପଡ଼େ ମୀନ-
ଶୁଣିବା ଲୋଭେ ହରିଣ,
ରମଣ ଲୋଭରୁ ହାତୀ ଧରା ପଡ଼େ-
ଭ୍ରମର ଲଭେ ମରଣ ।(୧୨୬)

ମୋହ ମାୟା ଭରା ଏ ସାରା ସଂସାରେ-
କେହି ନୁହନ୍ତି ନିଜର,
ନିଜ ଲୋକ ବୋଲି କହନ୍ତି ଯାହାକୁ-
ସିଏ ଦିନେ ହୁଏ ପର ।(୧୨୭)

ଯିଏ ଆଜି ମୋର ପୁତ୍ର କନ୍ୟା ଭାବେ-
ମଣ୍ଡନ କରିଛି କୋଳ,
ପୂର୍ବରୁ ସେ ମୋର କେହି ତ ନଥିଲେ-
ରହିବେନି ଚିରକାଳ ।(୧୨୮)

ପତି ପତ୍ନୀ ଭାବେ ଆମ ଅଭିନୟ-
ଅଳୀକ ମାୟା ସଂସାର,
କେଇଦିନ ପରେ ଜଣେ ଚାଲିଗଲେ-
ଗଲା ଲୋକ ହେବ ପର ।(୧୨୯)

ଧନ ଅରଜିଲେ ସଞ୍ଚୟ କରିବ-
ଭବିଷ୍ୟତେ ଲୋଡ଼ା ପାଇଁ,
ମିତ ବ୍ୟୟୀ କେବେ କୃପଣ ନୁହଇଁ-
ବଦଖର୍ଚ୍ଚୀ କାନ୍ଦୁଥାଇ ।(୧୩୦)

ସଂସାରେ ସୁନ୍ଦର ଦୁଇଟି ଦରବ-
ତହିଁରୁ ଗୋଟିଏ ଫୁଲ,
ଶିଶୁ ମୁଖେ ଦେଖ ଈଶ୍ୱରଙ୍କ ହସ-
କେ ହେବ ତାହାର ତୁଲ ?(୧୩୧)

ସତ୍ୟ ଆଉ ପ୍ରିୟ ବଚନ କହିବ-
ଶତ୍ରୁ ମିତ୍ର ପ୍ରିୟଠାରେ,
ସତ୍ୟ ହୋଇଲେ ବି ଅପ୍ରିୟ ସତ୍ୟକୁ-
କହିବନି କେବେ ଥରେ ।(୧୩୨)

ଅନୁଭୂତି ବୋଲି ଅନେକ କହିବେ-
ମିଥ୍ୟା ପୁଣି ଅସମ୍ଭବ,
ଅଯଥା ସେଠାରେ ତର୍କ କରିବନି-
ଶକ୍ତି କିଆଁ କ୍ଷୟ ହେବ?(୧୩୩)

ଅଳପ ପାଠୁଆ ବହୁତ କହନ୍ତି-
ତାକୁ ପରତେ ନଯିବ,
ଧାନ ବଦଳରେ ଚଷୁ କୁଟନ୍ତି ଯେ-
ତାଙ୍କ ପାଖ ନମାଡ଼ିବ ।(୧୩୪)

ଅହଂକାର ଶୂନ୍ୟ ବିଚାରବନ୍ତ ଯେ-
ମତକୁ କରେ ବଦଳ,
ମୂର୍ଖ ଆଉ ମୃତ ବ୍ୟକ୍ତିଙ୍କର ସେହି-
କାର୍ଯ୍ୟରେ ନଥାଏ ବଳ ।(୧୩୫)

ଆଜିର କଥାଟି କାଲିକୁ ବଦଳେ-
ମିଛ ହୋଇ ପାରେ ସତ,
ଦୋଷ ହେବନାହିଁ ଉଚିତ ବେଳରେ-
ବଦଳାଇ ଦେଲେ ମତ ।(୧୩୬)

ଆମିଷ ଆହାର ଶରୀର ମନକୁ-
କରିଥାଏ ପ୍ରଦୂଷିତ,
ମାଂସାହାରୀ ଜୀବ ଭୋଗୀଥାଏ ରୋଗ-
ଏକଥାଟି ପ୍ରମାଣିତ ।(୧୩୭)

ଉଚ୍ଚ ପଦବୀରେ ରହିଥିବ ଯଦି-
ଅଧିକ ସଂଯମୀ ହେବ,
ସାମାନ୍ୟ ଦୋଷଟି କର୍ମଚାରୀ ପାଇଁ-
ବଡ଼ ହୋଇ ଦିଶିଯିବ ।(୧୩୮)

ଚାମଚେ ଲବଣ ନେଇଗଲେ ତୁମେ-
ନେବେ ସେ ବସ୍ତାଏ ଚିନି,
ଅସଲ ବେଳକୁ ଅଧିକାରୀ ନାମେ-
ବାଜିବ ମୃଦଙ୍ଗ ଗିନି ।(୧୩୯)

ମଣିଷର ମନ ଘୋଡ଼ା ପରି ତେଜ-
ଆକାଶରେ ଯାଇ ଉଡ଼େ,
ବିବେକ ଲଗାମ ଥିଲେ ତୁମ ହାତେ-
ଯିବ କୁହ କେଉଁ ଆଡ଼େ ?।(୧୪୦)

ମନର ସେବକ ହେବନାହିଁ କେବେ-
ଧରିବ ଲଗାମ ଟାଣେ,
ମନର ମାଲିକ ହୋଇପାରେ ସିଏ-
ଯିଏ ଇନ୍ଦ୍ରୀୟକୁ ଜିଣେ ।(୧୪୧)

ସମୟର ମୂଲ୍ୟ କଳି ହୁଏ ନାହିଁ-
ଚାଲିଗଲେ ଫେରିବନି,
ଅନୁଭବୀ ଏକା ମୂଲ କରିପାରେ-
ସଚେତନ ହୁଏ ଜାଣି ।(୧୪୨)

ଅତୀତ ଯାଇଛି ଭବିଷ୍ୟ ଆସୁଛି-
କରନାହିଁ ତାର ଚିନ୍ତା,
ବର୍ତ୍ତମାନ ଏକା ମୂଲ୍ୟବାନ ଜାଣ-
ଲଗାଏ ବିଜୟ ଟିକା ।(୧୪୩)

ନମ୍ରତା ଲକ୍ଷଣ ମାନବୀୟ ଗୁଣ-
ଚିହ୍ନିବ କେମିତି ଶୁଣ,
ନିଜକୁ କଦାପି ବଡ଼ ନବିଚାରି-
କରିଯାଏ ଯିଏ କାମ ।(୧୪୪)

ଅବୁଝା ପାଠକୁ ମୁଖସ୍ଥ କରିଲେ-
ହୋଇଥାଏ ଚୋରି ସମ,
ଅସଲ ବେଳକୁ କାମରେ ଲାଗେନା-
ହୁଏ ଖାଲି ବୃଥା ଶ୍ରମ ।(୧୪୫)

ଭକତି ନଥାଇ ଜପୁଥିଲେ ନାମ-
ପ୍ରଭୁ କି ପାରନ୍ତି ଶୁଣି?
ଶୋଷ ଶୋଷ ବୋଲି ଚିତ୍କାର କରିଲେ-
ପାଖକୁ ଆସେନା ପାଣି । (୧୪୬)

ଧର୍ମର ଭାବନା ଈଶ୍ୱର ଚେତନା-
ଦେଶ ମାତୃକାର ସେବା,
ଜୀବେ ଦୟା ଭାବ ମନରେ ରଖିବା-
ସୁପାତ୍ରରେ ଦାନ ଦେବା ।(୧୪୭)

ଭଲ ଲୋକଟିଏ ଦିନଟିଏ ଥିଲେ,
ଚିରଦିନ ମନେ ରହେ,
ମନ୍ଦ ଲୋକ ପୁଣି ଦୀର୍ଘଜୀବୀ ହୋଇ-
ମନରୁ ଉଭେଇ ଯାଏ ।(୧୪୮)

ରୋଜଗାର ଧନ ଚାରି ଭାଗ କରି-
ସଞ୍ଚିବ ଗୋଟିଏ ଭାଗ,
ସଞ୍ଚୟ ଧନଟି ଭବିଷ୍ୟତ ପାଇଁ-
ସୁଖେ ଦୁଃଖେ କାମ ଦେବ ।(୧୪୯)

ଆଉ ଏକ ଭାଗ ପିତୃ ଋଣ ଶୁଝି-
ଭାଗେ ପୁତ୍ରେ ଋଣ ଦେବ,
ଚତୁର୍ଥ ଭାଗଟି ନିଜ ପାଇଁ ରଖି-
ସୁଖରେ ଦିନ କାଟିବ ।(୧୫୦)

ଯାହା ପାଇଁ ଯେଉଁ ଚିଜ ଦରକାର-
ସେଥିରେ ରଖିବ ମନ,
ରୋଗୀ ପାଇଁ ପଥି ଜରା ପାଇଁ ସେବା-
ଶିଶୁକୁ ଲୋଡ଼ା ଯତନ ।(୧୫୧)

ଭୋକିଲା ଲୋକର ପେଟକୁ ଭୋଜନ-
ଶୋଷି ପାଇଁ ଥଣ୍ଡା ଜଳ,
ଗରମ ଦିନରେ ଶୀତଳ ପବନ-
ଶୀତ ଦିନକୁ କମ୍ବଳ ।(୧୫୨)

ନିଜ କାର୍ଯ୍ୟ ଛାଡ଼ି ଖୋଜି ବସିଥିଲେ-
ପରର ଦୁର୍ଗୁଣ ଦୋଷ,
ଦେଖି ଦେଖି ଦୋଷ ନିଜଠାରେ ସେହି-
ଦୁର୍ଗୁଣ ହୁଏ ପ୍ରକାଶ ।(୧୫୩)

ପର ହିତ ଚିନ୍ତା ଭଲ କାର୍ଯ୍ୟେ ଗଣା-
ନିଜ ହିତ ସ୍ୱାର୍ଥପର,
ସ୍ୱାର୍ଥପର ସଦା ନିନ୍ଦିତ ହୁଅଇ-
ନୁହନ୍ତି କେହି ନିଜର ।(୧୫୪)

ପର ପାଇଁ ଯିଏ ଖୋଳୁଥାଏ ଗାତ-
ସେ ଗାତ ତା ପାଇଁ ଜାଣ,
ହାତ ହତିଆର ଧରି ଯେ ଡରାଏ-
ସେଥିରେ ଯାଏ ତା ପ୍ରାଣ ।(୧୫୫)

ବିଶ୍ୱାସ କରିବ ସବୁ ମଣିଷକୁ-
ନକରି ଅତି ବିଶ୍ୱାସ,
ସାବଧାନେ ଥିବ କେତେବେଳେ କେହି-
ବିଶ୍ୱାସରେ ଦେବ ବିଷ ।(୧୫୬)

ନିଜ ଇଷ୍ଟ ପାଶେ ପ୍ରାର୍ଥନା କରିବ-
ହେଉ ପଛେ ସବୁ ନାଶ,
ବୁଦ୍ଧିକୁ ମୋହର ନାଶ କରିବନି-
ଯାଉ ପଛେ ମାନ ଯଶ ।(୧୫୭)

ବୁଦ୍ଧିନାଶ ହେଲେ ସବୁ ଅକାରଣ-
କି ହେବ ସେ ଧନ ଜନ,
ବୁଦ୍ଧିବଳେ ସିନା ଅରଜି ପାରିବ-
ଧନ ଜନ ଯଶ ମାନ ।(୧୫୮)

ଦେହର ବଳରେ ଯାହା ଆସେ ଧନ-
ଦୁଇଗୁଣ କଉଶଳେ,
ତାର ବହୁ ଗୁଣ ସହଜେ ସରଳେ-
ଧନ ଆସେ ବୁଦ୍ଧି ବଳେ ।(୧୫୯)

ଶ୍ରମ କରି ହୁଏ ମଣିଷ ଶରୀରେ-
ରହିଥିଲେ ଦେହ ବଳ,
ଅସାଧ୍ୟ ସାଧନ କରିହୁଏ ପୁଣି-
ଥାଏ ଯଦି ଧନ ବଳ ।(୧୬୦)

ଛଳ ବଳେ ଯାହା ପ୍ରାପତ ହୁଅଇ-
ତାହା ନୁହେଁ ଚିରସ୍ଥାୟୀ,
ତନ୍ତ୍ର ବଳେ ଯାହା ଉପାର୍ଜ୍ଜନ ହୁଏ-
ଯାଏ ତା ଉଭାନ ହୋଇ ।(୧୬୧)

କୋପ ବଳେ ଯଦି ମିଳିଥାଏ କିଛି-
ଶାନ୍ତି ଦେଇ ପାରେ ନାହିଁ,
ତପ ବଳେ ଯାହା ମିଳଇ ବିଳମ୍ବେ-
ରହେ ଯୁଗ ଯୁଗ ପାଇଁ ।(୧୬୨)

ଲୋକବଳ ଥିଲେ ଲଢ଼େଇରେ ଜୟ-
କ୍ଷମତା ହାତକୁ ଆସେ,
ସବୁଠାରୁ ବଡ଼ ମନର ବଳରେ-
ପଥର ପାଣିରେ ଭାସେ ।(୧୬୩)

ସଫଳ ସୁଖ୍ୟାତି ମିଳିଥାଏ ସିନା-
କର୍ମ ଯଦି ଥାଏ ସିଧା,
କର୍ମକୁ ଆଦରି ପଡ଼ି ରହିଥିଲେ-
ଅରଜେ ସେ ଖାଲି ନିନ୍ଦା ।(୧୬୪)

କର୍ମ ଫଳ ପ୍ରାଣୀ ଲଭିଥାଏ ସତ-
ଉଦଯୋଗ ଲୋଡ଼ା ତା ପାଇଁ,
କର୍ତ୍ତା ଉପଯୁକ୍ତ ନଥିଲେ ସେ ଫଳ-
ବହିଯାଏ ଲୁହ ହୋଇ ।(୧୬୫)

ଭାଗ୍ୟର ଗତିକୁ  ବଦଳାଇ ପାରେ-
ମଣିଷ ନିଜ ହାତରେ,
ନଥିଲେ ଉଦଯୋଗ ଉଦାସୀନ ଭାବ-
ଆସେ ମନର ଭିତରେ ।( ୧୬୬)

ହାତ ଗୋଡ଼ ଆଖି କାନ ଯାର ଅଛି-
ସିଏ କି ବେକାର ହୁଏ,
ନିଜକୁ ଯେ ନର ଭାବଇ ବେକାର-
ତାକୁ ଉଠେଇବ କିଏ?( ୧୬୭)

ହସ୍ତରେଖା ଆଉ କପାଳ ଲିଖନ-
ବଦଳେ କର୍ମର ଫଳେ,
ସୁଖ ଦୁଃଖ ଆସେ ଭଲ ମନ୍ଦ ମିଶେ-
କଲା କର୍ମରୁ ଯା ମିଳେ ।( ୧୬୮)

ଉଦ୍‌ଯୋଗୀ ମଣିଷ ଲକ୍ଷ୍ମୀବନ୍ତ ହୁଏ-
ବସିଖିଆ ଦୁଃଖ ପାଏ,
ସଙ୍ଗ ଦୋଷ ପୁଣି ନିସଙ୍ଗ ଜୀବନ-
କୁପଥକୁ ନେଇଯାଏ ।( ୧୬୯)

ମୋହଗ୍ରସ୍ତ ହେଲେ ନିଜ ଲୋକଠାରେ-
ଦିଶେନାହିଁ ଅବଗୁଣ,
ଦଶ ଦୋଷ ତାର ଅତି କ୍ଷୁଦ୍ର ହୋଇ-
ଦାରୁ ଦିଶେ ଯଥା ତୃଣ ।( ୧୭୦)

ଧୃତରାଷ୍ଟ୍ର ରାଜା ମୋହ ଗ୍ରସ୍ତ ହୋଇ-
ପୁତ୍ର ଅନ୍ୟାୟକୁ ମାନି,
ଅଧର୍ମ ପଥକୁ ଆଦରି ନେଇ ସେ-
ବଂଶ ନାଶ କଲେ ଜାଣି।(୧୭୧)

ପରଠାରେ ଯଦି ଦୋଷ ଅବଗୁଣ-
ଦେଖୁଥିବ ଘନଘନ,
ମନେ ରଖିଥିବ ତଥାପି ତାଠାରେ-
ଥାଇପାରେ ଭଲଗୁଣ ।(୧୭୨)

ଷଡ଼ ଦୋଷ ଥିଲେ ଆତତାୟୀ ବୋଲି-
ଚିହ୍ନାଇ ଦେଇଛି ଶାସ୍ତ୍ର,
ନିଆଁ ଯେ ଲଗାଏ ବିଷ ଦେଇ ମାରେ-
ଡରାଏ ଧରି ଯେ ଅସ୍ତ୍ର ।(୧୭୩)

କପଟ କରି ଯେ ପର ଧନ ହରେ-
ନାରୀକୁ ଦିଏ ଲାଞ୍ଛନା,
ଆତତାୟୀ ସେହି ଅତ୍ୟାଚାରୀ ପୁଣି-
ପାପୀରେ ହୁଏ ଗଣନା ।(୧୭୪)

ଷଡ଼ ଦୋଷ ପାଇଁ ଦୁର୍ଯ୍ୟୋଧନ ବୀର-
ଲଭିଲେ ମରଣ ଯୋଗ,
କୁଳବୁଡ଼ା ଭାବେ ଦୁର୍ଯ୍ୟୋଧନ ନାମ -
ରହିଗଲା ଯୁଗ ଯୁଗ ।(୧୭୫)

ଆମରି ଶରୀର ଈଶ୍ୱର ମନ୍ଦିର-
ବିଜେ ତହିଁ ନିରାକାର,
ହୃଦ ସିଂହାସନ ତାଙ୍କର ଆସନ-
ମନ ବଇକୁଣ୍ଠପୁର ।(୧୭୬)

ମନ୍ଦିର ସେବାରେ ଚନ୍ଦ୍ର ସୂର୍ଯ୍ୟ ବାୟୁ-
ଲାଗିଛନ୍ତି ଅହରହ,
ବରୁଣ ଦେବତା ଶିରା ପ୍ରଶିରାରେ-
ହୋଇଛନ୍ତି ଲହୁ ଲୁହ ।(୧୭୭)

ଚକ୍ଷୁ ଦୁଇ ସିନା ଚନ୍ଦ୍ର ସୂର୍ଯ୍ୟ ତେଜ-
ନାଶାରେ ଯାଏ ପବନ,
ପୁଣ୍ୟ ନଦ ନଦୀ ବହନ୍ତି ଶିରାରେ-
ଜଳରେ ଥାଏ ଜୀବନ ।(୧୭୮)

ଗଳାରେ ବସନ୍ତି ଦେବୀ ସରସ୍ୱତୀ-
ଲକ୍ଷ୍ମୀ ବାହୁରେ ବସନ୍ତି,
ମହାବୀର ହନୁ ଗ୍ରୀବା ପରେ ଥାଇ-
ପ୍ରଭୁ ସେବାରେ ଥାଆନ୍ତି ।(୧୭୯)

ଅଗ୍ନିଦେବ ଖାଦ୍ୟ ଦହନ୍ତି ନିରତ-
ତହିଁରୁ ଶକତି ଜାତ,
ପଞ୍ଚ ପାଣ୍ଡବ ଯେ ପାଞ୍ଚୋଟି ଆଙ୍ଗୁଳି-
ଈଶ୍ୱର ସେବାରେ ରତ ।(୧୮୦)

ଅନ୍ୟ ଦେବଗଣ  ଘେରି ଥାନ୍ତି ତାଙ୍କୁ-
ନାହିଁ ଯାର ରୂପ ରେଖ,
ଆତ୍ମା ପାଶେ ଥାଇ ପରମ ଆତ୍ମା ସେ-
ନଭୁଞ୍ଜଇ ସୁଖ ଦୁଃଖ ।(୧୮୧)

ଈଶ୍ୱର ଯେଉଁଠି କରନ୍ତି ବିହାର-
ପବିତ୍ର ସେହି ଶରୀର,
ସେ ମନ୍ଦିର ସେବା ଯତନେ କରିବ-
ରଖିବ ସଫା ସୁତର ।(୧୮୨)

ଧନ ଜନ ସୁଖ ସମୃଦ୍ଧି ବଢ଼ଇ-
ସଫା ଥିଲେ ପରିବେଶ,
ପରିବେଶ ସଦା ପ୍ରଭାବିତ କରେ-
ଅମୃତକୁ କରେ ବିଷ ।(୧୮୩)

ଜଗତ କରତା ବିଷ୍ଣୁ ମନ୍ତ୍ର ପ୍ରିୟ-
ମହାଦେବ ଜଳପ୍ରିୟ,
ଦିନନାଥ ସୂର୍ଯ୍ୟ ନମସ୍କାର ପ୍ରିୟ-
ବ୍ରାହ୍ମଣେ ଭୋଜନ ଦିଅ ।(୧୮୪)

ଗୁରୁଙ୍କୁ ଚିହ୍ନିବ ସଦାକାଳେ ଯିଏ-
ଶିଷ୍ୟ ହିତ ଚିନ୍ତୁଥିବ,
ଆତ୍ମଜ ପରାଏ ସ୍ନେହ  ପ୍ରୀତି ଦେଇ-
ଜ୍ଞାନ ଦାନେ ରତ ଥିବ ।(୧୮୫)

ପାଇବା ଲାଳସା ଅଶାଳୀନ ଭାଷା-
ଯଦି ଥାଏ ଗୁରୁଠାରେ,
ଗୁରୁପଣେ ତାକୁ ନଗଣିବ କେବେ-
ରହିବ ତାହାଠୁ ଦୂରେ ।(୧୮୬)

ତର୍କରେ ନିପୁଣ ବିଜ୍ଞାନ ପ୍ରମାଣ-
ଶାସ୍ତ୍ରରେ ଯାହାର ମନ,
ଅସତ୍ୟ ଅନ୍ୟାୟ ବିରୋଧୀ ଗୁରୁଙ୍କୁ-
ପାଇଲେ ହୋଇବ ଧନ୍ୟ ।(୧୮୭)

ଇତରେ ପ୍ରସନ୍ନ କରିବ ଅନ୍ନରେ-
ଦୁର୍ବଳେ ଦେଇ ସାହସ,
ଅସହାୟ ପ୍ରାଣେ ଭରିଦେବ ଆଶା-
ଦୁଃଖୀ ମନରେ ହରଷ ।(୧୮୮)

ମାଛି ଖୋଜୁଥାଏ ପଚା ଘାଆ ପୂଜ-
ଫୁଲ ଖୋଜେ ପ୍ରଜାପତି,
ମହୁମାଛିଟିଏ  ମହୁ ଖୋଜି ଖୋଜି-
ବୁଲୁଥାଏ ଦିନରାତି ।(୧୮୯)

ପରଦୋଷ କାହିଁ ଖୋଜି ବୁଲୁଥିଲେ-
ଘୃଣ୍ୟ ହେବ ମାଛି ପରି,
ପର ଲୋକଠାରେ ଭଲ ଗୁଣ ଥିଲେ-
ଶୋଷିନେବ ମନଭରି ।(୧୯୦)

ସଂସାର ସାଗରେ ମଣିଷଟି ମୀନ-
ମହାକାଳ ହିଁ ଧୀବର,
ମାୟା ରୂପୀ ଜାଲ ବିଛାଇଛି କାଳ-
ଲୋଭରୁ ହୁଏ ଶିକାର ।(୧୯୧)

ପର ଦୁଃଖକୁ ଯେ ନିଜର ଭାବଇ-
ଖୋଲି ପାରେ ମନ କଥା,
ଅଳପ ଲେଖାରେ ଆଳାପ କରେ ଯେ-
କା ମନେ ନଦେଇ ବ୍ୟଥା ।(୧୯୨)

ବୁଝାଇ ପାରେ ଯେ ସରଳ ଭାଷାରେ-
ଅକୁହା ଅବୁଝା ଦୁଃଖ,
ଅଜଣା ବାଟରେ କି ଅଛି ବତାଏ-
ଦୁଃଖରୁ ଖୋଜଇ ସୁଖ ।(୧୯୩)

ଶାସ୍ତ୍ର ଅଲୋଚନା ତର୍କରେ ନିପୁଣ-
ଅକ୍ଷର ସୁନ୍ଦର ଥିବ,
ଯା ହୃଦେ ରହିଛି ପ୍ରକୃତିର ପ୍ରୀତି-
ତାଙ୍କୁ ଲେଖକ ଜାଣିବ ।(୧୯୪)

ନିଜକୁ ଯେ ଗୁରୁ ଛାତ୍ର ମନେ କରି-
ଅଧ୍ୟୟନେ ଥାଏ ରତ,
ଜାଣିବ ସେ ଗୁରୁ ଜ୍ଞାନର ଭଣ୍ଡାର-
ଛାତ୍ର ସମାଜକୁ ହିତ ।(୧୯୫)

ଦ୍ୱିତୀୟ ଈଶ୍ୱର ନାମେ ପରିଚିତ-
ଡାକ୍ତର ବାବୁ ଜଣେ,
ଜୀବନ ମରଣ ବିକଳ କ୍ରନ୍ଦନ-
ସବୁଦିନ ଯିଏ ଶୁଣେ ।(୧୯୬)

ମରଣ ମୁଖରୁ ଉଦ୍ଧାର କରନ୍ତି-
ମନରେ ସାହସ ଦେଇ,
ଯନ୍ତ୍ରଣା ଲାଘବ କରନ୍ତି ରୋଗୀର-
ନିଜ ସୁଖ ଭୁଲି ଯାଇ ।(୧୯୭)

ଶତ୍ରୁମିତ୍ର ଭାବ ନଥାଏ ତାଙ୍କର-
ସେବା ଜୀବନର ବ୍ରତ,
ସମାଜର ସବୁ ଶ୍ରେଣୀର ଜନତା-
କରିଥାନ୍ତି ଦଣ୍ଡବତ ।(୧୯୮)

ଧନ ପାଇଁ ଯଦି ଜୀବନ ସହିତ-
ଖେଳନ୍ତି ସେ ଡାକ୍ତର,
ଲୋକେ କହିଥାନ୍ତି ଯମର ଭାଇ ସେ-
ଧିକ ତାର ରୋଜଗାର ।(୧୯୯)

ଯମ ସିନା ଏକା ଜୀବନ ନିଅଇ-
ଛାଡ଼ି ଦେଇ ତାର ଧନ,
ଡାକ୍ତର ତାକୁ ଧନ ଲୁଟି ସାରି-
ନେଇଥାଏ ରୋଗୀ ପ୍ରାଣ ।(୨୦୦)

କେତେ ବେଶ ଧରି ଦାଢ଼ି ଜଟା ଛାଡ଼ି-
ବୁଲନ୍ତି ସନ୍ନ୍ୟାସୀ ହୋଇ,
ଲୋକଙ୍କୁ ଠକାଇ ନଖଟି ଖାଆନ୍ତି-
ମିଛ ଚାଟୁ କଥା କହି ।(୨୦୧)

ଆମ ମନ ଜାଣି ଭବିଷ୍ୟତ ବାଣୀ-
କହନ୍ତି କଳ୍ପନା କରି,
ଏଭଳି ଭଣ୍ଡଙ୍କୁ ବିଶ୍ୱାସ କରିଲେ-
ନେବେ ସେ ସର୍ବସ୍ୱ ହରି ।(୨୦୨)

ଏ ଭାରତ ଭୂଇଁ ପବିତ୍ର ହୋଇଛି-
କେତେ ସାଧୁ ସଙ୍ଗ ପାଇ,
ତପସ୍ୱୀ ସାଧକ ମୁନି ଋଷି ଗଣ-
ଅଛନ୍ତି ଅମର ହୋଇ ।(୨୦୩)

ସାଧୁଙ୍କୁ ଚିହ୍ନିବ ସାଧନା କାଳରେ-
ଥିଲେ ତ୍ୟାଗ ନିଷ୍ଠା ତପ,
ଧନ ଦରବରେ ଉଦାସୀନ ଭାବ-
ସଞ୍ଚୟକୁ ମଣି ପାପ ।(୨୦୪)

ନଥିବ ଆଶ୍ରମ ମଠ କି ମନ୍ଦିର-
ନଥିବେ ସେବିକା କେହି,
ଧର୍ମ ଆଲୋଚନା ମଙ୍ଗଳ କାମନା-
କରି ଚାଲିଥିବେ ସେହି ।(୨୦୫)

ତନ୍ତ୍ର ବଳେ ଯିଏ କରନ୍ତି ସାଧନା-
ମଶାଣିରେ ଦେଇ ପଣା,
ନୁହନ୍ତି ସେ ସାଧୁ ନୁହନ୍ତି ସନ୍ନ୍ୟାସୀ-
ତାନ୍ତ୍ରିକ ଭାବରେ ଗଣା ।(୨୦୬)

ଧନ ଜନ ଲୋଭେ ପର ଅପକାରେ-
ଦିଅନ୍ତି କେତେକ ବଳି,
ଜୀବବଳି ଦେଇ ଜୀବନରେ କେହି-
ହୋଇନାହିଁ ମହାବଳୀ ।(୨୦୭)

ଶରୀର ନେଇ ଯେ ଜନମ ନେଇଛି-
ମରଣ ଲଭିବ ସିଏ-
ଧନ ଜନ ମାନ ଚାଲିଗଲା ବେଳେ-
ଅଟକାଇ ପାରେ କିଏ?(୨୦୮)

ଏହି ଦୁନିଆଟି ବଡ଼ ରଙ୍ଗମଞ୍ଚ-
ତୁମେ ଜଣେ ଅଭିନେତା,
ତୁମ ଅଭିନୟ ନିଖୁଣ ହୋଇଲେ-
ହୋଇବ ଜଗତ ଜିତା ।(୨୦୯)

ନିଜ ପ୍ରିୟଜନ ରଙ୍ଗମଞ୍ଚ ପରେ-
କରୁଛନ୍ତି ଅଭିନୟ,
କେଉଁ ଭୂମିକାରେ ଅବତୀର୍ଣ୍ଣ ହେବ-
ତାହା ନିଜେ ବାଛିନିଅ ।(୨୧୦)

ଜୀବନଟା ଯଦି ହୁଏ ବିଦ୍ୟାଳୟ-
ଶିଖି ନିଅ ପଢ଼ି ନିଅ,
ଜୀବନକୁ ଯଦି ରଣକ୍ଷେତ୍ର ଭାବ-
ଯୁଦ୍ଧରେ ବିଜୟୀ ହୁଅ ।(୨୧୧)

ଜୀବନର ଖୋଲା ଖେଳ ପଡ଼ିଆରେ-
ଖେଳିଯାଅ ମନଖୋଲି,
ଜୀବନର ରଙ୍ଗଭରା ବଗିଚାରେ-
ଫୁଲ ସଙ୍ଗେ ଖେଳ ଦୋଳି ।(୨୧୨)

ଜୀବନଟା କାର ନୁହେଁ ମୂଲ୍ୟହୀନ-
ଦୁର୍ଲଭ ମାନବ ଜନ୍ମ,
ସୁଖ ସଙ୍ଗେ ଦୁଃଖ ମଧୁର ମିଳନ-
ଭୋଗକର ନିଜ କର୍ମ ।(୨୧୩)

ଜୀବନଟା ସିନା ପାପଯୁକ୍ତ ହେଲେ-
ମନରେ ବିଷାଦ ଜାଗେ,
ଜୀବନଟା ଯଦି ଲାଗେ ବିଷମୟ-
କାରଣ ଖୋଜିବ ଆଗେ ।(୨୧୪)

ଜୀବନଟା ହେଲେ ସମସ୍ୟା ବହୁଳ-
ଅଛି ତାର ସମାଧାନ,
ଜୀବନଟା ହେଲେ ଅମୃତ ସାଗର-
କରିନିଅ ସୁଧା ପାନ ।(୨୧୫)

ବରଷକେ ଥରେ ପଡ଼େ ସ୍ୱନକ୍ଷତ୍ର-
ବୟସଟି ବଢ଼ିଯାଏ,
ଗୋଟିଏ ବରଷ ଆୟୁଷ କମଇ-
ଆଉ କିଛି କଥା ନୁହେଁ।(୨୧୬)

ଭୋଜି ଭାତ ମଜା ମଉଜ ପାଇଁ ସେ-
ଦିନଟି ନୁହଁଇ ସ୍ଥିର,
ଗତ ବରଷଟି କେମିତି କଟିଲା-
ହିସାବ କରିବ ତାର।(୨୧୭)

ଆଗାମୀ ବରଷେ କି କରିବା ଆଉ-
ଶପଥ ନେବା ସେଦିନ,
କିଛି ତ୍ରୁଟି ଥିଲେ ସଂଶୋଧନ ପାଇଁ-
ରଖିବା ସେଥିରେ ମନ।(୨୧୮)

ଜନମ ପୂର୍ବରୁ ସନ୍ତାନ ସନ୍ତତି-
ହୋଇଥାନ୍ତି ପିତୃ ଋଣୀ,
ସେ ଋଣ ସୁଝିବା ସହଜ ନୁହଁଇ-
ସେବା କରୁଥିବ ଜାଣି।(୨୧୯)

ସଫଳ ମଣିଷ ହେବାପାଇଁ ଆମେ-
ଭରସି ଥାଉଁ ପରକୁ,
କେତେ କାନ୍ଧପରେ ପାଦ ଦେଇ ଆମେ-
ଉଠିଥାଉ ଉପରକୁ।(୨୨୦)

ସମାଜର ସବୁ ପ୍ରାଣୀର ନିକଟେ-
ଆମେ ହୋଇଥାଉ ଋଣୀ,
ତାର ପ୍ରତିଦାନେ କିଛି ଦାନ ପୁଣ୍ୟ-
କରୁଥିବ ଜାଣି ଶୁଣି ।(୨୨୧)

ଜୀବନକୁ ସୁଖ ସୁନ୍ଦର କରିବ-
ଥିଲେ ଆଧ୍ୟାତ୍ମିକ ଭାବ,
ଈଶ୍ୱର ବିଶ୍ୱାସ ସଦାଚାରେ ସଦା-
ମିଳେ ଶାନ୍ତି ଅନୁଭବ ।(୨୨୨)

କୁସଂସ୍କାର ଆଉ ଅନ୍ଧ ବିଶ୍ୱାସଟି-
ତାଙ୍କି ରଖେ ସଂସ୍କୃତିକୁ,
ବିଜ୍ଞାନ ମନସ୍କ ବୁଦ୍ଧିଦୀପ୍ତ ହୋଇ-
ଦୂରେଇ ରଖିବ ତାକୁ ।(୨୨୩)

ଭ୍ରମ ଧାରଣାକୁ ଯୁକ୍ତିର ସମ୍ମତେ-
ମନରୁ ଆଡ଼େଇ ଦେବ,
ସଂସ୍କୃତିରେ ଥିବା କଳା ବାଦଲକୁ-
ସଂସ୍କାରେ ଉଡ଼େଇ ନେବ ।(୨୨୪)

ପିତା ମାତା ଦୁହେଁ ଜୀବନ୍ତ ଦେବତା-
କରିବନି ଅବହେଳା,
ତାଙ୍କ ଗୁଣସୂତ୍ର ଆମ ଶରୀରରେ-
କରୁଅଛି ଲୀଳାଖେଳା ।(୨୨୫)

ତାଙ୍କ କଲ୍ୟାଣରୁ ପୁତ୍ର କନ୍ୟା ଗଣ-
ହେଉଥାନ୍ତି ଯଦି ସୁଖୀ,
ତାଙ୍କ ଲୋତକରୁ ନିଶ୍ଚୟ ସେମାନେ-
ହୋଇଯିବେ ଚିର ଦୁଃଖୀ ।(୨୨୬)

ବିବାଦ କ୍ଷେତ୍ରରେ ତିନିଜଣ ଲୋକ-
ହୋଇଥାନ୍ତି ଉପସ୍ଥିତ,
ଜଣେ ଏକ ପକ୍ଷ ସମର୍ଥନ ଦେଇ-
କରୁଥାଏ ପକ୍ଷପାତ ।(୨୨୭)

ଅନ୍ୟ ଜଣେ ପୁଣି ସବୁ ଦେଖି ଶୁଣି-
ହୋଇଥାଏ ଉଦାସୀନ,
ତୃତୀୟ ଲୋକଟି ହୁଅଇ ମଧ୍ୟସ୍ଥି-
ଭାଙ୍ଗେ ଦୁଇପକ୍ଷ ମାନ ।(୨୨୮)

ମଧ୍ୟସ୍ଥି ହୋଇବା ମହତ କର୍ତ୍ତବ୍ୟ-
ଲୋଡା ହୁଏ ସାବଧାନ,
ନୋହିଲେ ବିପଦେ ପଡ଼ିବେ ସୁଜନେ-
ଖାଇ ଦୁଇ ପକ୍ଷ ହାଣ ।(୨୨୯)

ନ୍ୟାୟ ଅନ୍ୟାୟରେ ସାକ୍ଷ୍ୟ ଦେବାପାଇଁ-
ଡରିଥାନ୍ତି କୁପୁରୁଷ,
ସତ୍ୟ ଘଟଣାକୁ ଖୋଲି କହିଦେଲେ-
ଜଣା ପଡ଼େ ପଉରୁଷ ।(୨୩୦),

ସତ୍ୟ ନ୍ୟାୟ ପାଇଁ ବିପଦେ ପଡ଼ିଲେ-
କରିବ ନାହିଁ ଖାତର,
ଅସଲ ବେଳକୁ ଅନ୍ୟାୟ ଅନୀତି-
ହାରିବ ଥରକୁ ଥର ।(୨୩୧)

ଜଣେ କେ ଅନ୍ୟାୟ ପାପ କାର୍ଯ୍ୟ କରି-
ଯଦି ଥାଏ ଉଚ୍ଚେ ରହି,
ତାକୁ ଅନୁସରି ଉଦାହରଣରେ-
କେବେ ହେଲେ ନେବନାହିଁ ।(୨୩୨)

ପୂର୍ବର ସୁକୃତି ରହିଥାଏ ବାକି-
ପାପକୁ ନିଏ ସମ୍ଭାଳି,
ସୁକୃତି ସରିଲେ ଆଣ୍ଠ ଭାଙ୍ଗିଯିବ-
ପଡ଼ିବ ଦୁର୍ଗତି ପାଳି ।(୨୩୩)

ଉଭୟଚର ସେ ଜୀବଟିଏ ଓଧ-
ଜଳେ ବୁଡ଼ି ମାଛ ଧରେ,
ତାକୁ ଦେଖି ଯଦି ବିରାଡ଼ି ଡେଇଁଲା-
ଜଳେ ବୁଡ଼ି ନିଜେ ମରେ ।(୨୩୪)

ପର ଉପକାର ଧର୍ମେ ହୁଏ ଗଣା-
ସ୍ୱର୍ଗ ସୁଖ ମନେ ଜାଗେ,
ମାନସିକ କିବା ଦୈହିକ ଯନ୍ତ୍ରଣା-
ଦେଉଥିଲେ ପାପ ଲାଗେ ।(୨୩୫)

ଜୀବ ହତ୍ୟା ସିନା ପାପେ ହୁଏ ଗଣା-
ଆତ୍ମହତ୍ୟା ମହାପାପ,
ସାତ ଜନମରେ ନଛାଡ଼େ ସେ ପାପ-
କଲେ ଯେତେ ଅନୁତାପ ।(୨୩୬)

ସୁଖ ଦୁଃଖ ଭୋଗ କଲା କର୍ମ ଯୋଗ-
ଲଭିବାକୁ ପ୍ରାଣୀ ଆସେ,
ବେଳ ଥାଉ ଥାଉ ଗଲେ ସେହି ପ୍ରାଣୀ-
ପ୍ରେତ ହୋଇ ଶୂନ୍ୟେ ଭାସେ ।(୨୩୭)

ପ୍ରେତ ଜୀବନଟି ଯନ୍ତ୍ରଣାରେ ଭରା-
ନଥାଏ ଶରୀର ତାର,
ମୁକ୍ତି ଲଭିବାକୁ ହୁଏ ସେ ବ୍ୟାକୁଳ-
ବୋହିଥାଏ ପାପ ଭାର ।(୨୩୮)

ମଣିଷ ଗଢ଼ିଛି ଜାତି ଧର୍ମ ବର୍ଣ୍ଣ-
ଉଚ୍ଚ ନୀଚ ବଡ଼ ସାନ,
କର୍ମ ବଦଳିଲେ ଧର୍ମ ବଦଳିଲେ-
ହୁଏନାହିଁ ଅସମାନ ।(୨୩୯)

ନୀଚ କୁଳେ ଜାତ କେତେ ପୁଣ୍ୟବନ୍ତ-
ଅରଜି ଅଛନ୍ତି ଯଶ,
କେତେ ଉଚ୍ଚ କୁଳେ ଜନ୍ମି କାଳବଳେ-
କରିଛନ୍ତି ସର୍ବନାଶ ।(୨୪୦)

ଜାତି ବଡ଼ ନୁହେଁ ଧନ ବଡ଼ ନୁହେଁ-
ବଡ଼ ମହତ ପଣିଆ,
ମହତ ଜନର ନାହିଁ ଭେଦଭାବ-
କୁଟୁମ୍ବ ତାର ଦୁନିଆ(୨୪୧)

ଆପଣା ଉପରେ ନାହିଁ ଯା ଭରସା-
ପର ରୋଜଗାର ଖାଏ,
ଅଭାଗା ସେ ପ୍ରାଣୀ ଧିକ ତା ଜୀବନ-
ଋଣୀ ହୋଇ ମରି ଯାଏ ।(୨୪୨)

କେବେ ଯଦି ଦୁଃଖ ଅତି ଭାର ଲାଗେ-
ହତାଶ ହୋଇବ ନାହିଁ,
ତୁମଠାରୁ ବଳି ଆହୁରି ଦୁଃଖରେ-
ମଣିଷ ଅଛନ୍ତି ରହି ।(୨୪୩)

ସୁଖ ସଂପତ୍ତିରେ ପୋତି ହୋଇଗଲେ-
ଜାଗେ ଅହଂକାର ଭାବ,
ମନେ ରଖିଥିବ ଏ ସବୁ ଅଳୀକ-
ଦୁଃଖ ଦେଇ ଦିନେ ଯିବ ।(୨୪୪)

ପ୍ରତିଦିନ କେତେ ମରଣ ଲଭନ୍ତି-
ଦେଖନ୍ତି ସକଳ ଜନ,
ତଥାପି ମଣିଷ ଭାବୁଥାଏ ମନେ-
ରହିଥିବି ଚିରଦିନ ।(୨୪୫)

ସଦାକାଳେ ଅତି, ବିପଦ ଆଣଇ-
ଧନ ଜନ ମାନ ଯଶ,
ଅତି ଦାନ କରି ବଳୀ ମହାରାଜା-
କଲେ ନିଜ ସର୍ବନାଶ ।(୨୪୬)

ଅତି ମାନ ଭରି କୌରବ ସବଂଶେ-
ଯୁଦ୍ଧରେ ହେଲେ ନିଧନ,
ଅତି ଅହଂକାରୀ ଲଙ୍କା ହତଶିରୀ-
କଲେ ବିଶ୍ରବା ନନ୍ଦନ । (୨୪୭)

ଅତି ବେଶି ବଢ଼ ନାହିଁ ଥଳ କୂଳ-
ଅଲୋଡ଼ା ସାଗର ଜଳ,
ଅତି ବେଗେ ଯଦି ବହିଲା ପବନ-
ଆସେ ପ୍ରଳୟର ବେଳ ।(୨୪୮)

ସ୍ୱର୍ଗ କି ପାତାଳେ ନଥାଏ ଅମୃତ-
ସଂସାର ଭିତରେ ମିଳେ,
ଫଳରେ ଫୁଲରେ ହସରେ ବାସରେ-
ଭରିଛି ମାଟିର ତଳେ ।(୨୪୯)

ମଧୁର କଥାରେ ଈଶ୍ୱର ଚିନ୍ତାରେ-
ଫିଟିଛି ଅମୃତ ଧାରା,
ଅମୃତ ଝରଇ ମାଆ ମମତାରେ-
ପବନ ଅମୃତ ଭରା ।(୨୫୦)

ଟିକିଏ ବିଳମ୍ବ ବିରାଟ କାର୍ଯ୍ୟରେ-
କରାଏ ପ୍ରଭୂତ କ୍ଷତି,
ଟିକିଏ ମଧୁର ଥିଲେ ବଚନରେ-
ବଦଳାଇ ଦିଏ ମତି ।(୨୫୧)

ଟିକିଏ କଥାରେ ଥିଲେ କଟୁ ଭାଷା-
ମରମକୁ ଦିଏ ଛୁଇଁ,
ଟିକିଏ ଦୋଷରୁ ଦୁର୍ଘଟଣା ଘଟେ-
ଜୀବନ ଯାଏ ପଳାଇ ।(୨୫୨)

ଟିକିଏ ବିଷରେ କେତେ ବଡ଼ ଜନ୍ତୁ-
ହାତୀର ଜୀବନ ଯାଏ,
ଟିକିଏ ତ୍ରୁଟିରେ ମହାକାଶ ଯାନ-
ଆକାଶରେ ଭଷ୍ମ ହୁଏ ।(୨୫୩)

ଟିକିଏ ମାନରୁ ସୁନ୍ଦର ସଂସାର-
ଭାଙ୍ଗିହୁଏ ଛାର ଖାର,
ଟିକିଏ ହସରେ ମାନ ଭାଙ୍ଗି ଯାଇ-
ଫିଟେ ହସର ଜୁଆର ।(୨୫୪)

ଟିକିଏ ଆଲୋକ ଅନ୍ଧକାର ନାଶେ-
ଦୂର ଦିଗନ୍ତକୁ ଛୁଇଁ,
ଟିକିଏ ପବନ ଚଳାଏ ଜୀବନ-
ନିଶ୍ୱାସ ପ୍ରଶ୍ୱାସ ହୋଇ ।(୨୫୫)

ଟିକିଏ ନିଆଁକୁ ସମ୍ଭାଳି ହେବକି-
ଘନବନ ଚାଳଘରେ?
ଟିକିଏ ଜଳ ବି ଜୀବନ ବଞ୍ଚାଏ-
ଜୀବ ଛାଡ଼ିଗଲା ବେଳେ ।(୨୫୬)

ଟିକିଏ ହେଳାରୁ ଜୀବନ ଜୀବିକା-
ଥାଏ ବୁଡ଼ିବାର ଭୟ,
ଟିକିଏ କଥାକୁ ଅବହେଳା କଲେ-
ହୁଏ ଖାଲି ପରାଜୟ ।(୨୫୭)

ବହୁତ ଲୋକରେ ମୂଷା ମରେ ନାହିଁ-
ବହୁତ ପାଣିରେ ମାଛ,
ବହୁତ କଥାର ନଥାଏ ଓଜନ-
ବହୁତ ଅରମା ଗଛ ।(୨୫୮)

ବହୁତ ସନ୍ତାନ ଦୁଃଖର କାରଣ-
ବହୁତ ପାଠୁଆ ବୋକା,
ବହୁତ କାମରେ ହାତ ଦେଇଥିଲେ-
ସବୁ ହୁଏ ଅଣଦେଖା ।(୨୫୯)

ବହୁତ ଖାଇଲେ ଆୟୁଷ କମଇ-
ବହୁତ ଫୁଲିଲେ ଫାଟେ,
ବହୁତ ବୁଲିଲେ ବାଚାଳତା ବଢ଼େ-
ଖଟିଲେ ଜୀବନ ଛୁଟେ ।(୨୬୦)

ବହୁତ ସୁନ୍ଦରୀ ପାଏନାହିଁ ବର-
ବହୁତ ସାହସୀ ମରେ,
ବହୁତ ହସରେ ଲୁହ ଝରିପଡ଼େ-
ବହୁତ ହୋଇଲେ ସରେ ।(୨୬୧)

ବହୁତ ସଂପତ୍ତି ଆଣଇ ବିପତ୍ତି-
ବହୁତ ଖୋଜିବ ନାହିଁ,
ବହୁତ ଜିନିଷ ବଣ୍ଟା ହେଉଥିଲେ-
ବେଶି ରଖ ପରପାଇଁ ।(୨୬୨)

ଆଖିରେ ପିନ୍ଧିଲେ ନୀଳ ଚଷମାକୁ-
ଦୁନିଆଟା ନୀଳ ଦିଶେ,
ନିଜ ଦୃଷ୍ଟିକୋଣ ଥିଲେ ସକାରାତ୍ମ-
ତା ପାଇଁ ନିର୍ଜୀବ ହସେ ।(୨୬୩)

ପାପ ନୟନରେ ଚାହିଁଲେ ସତ୍ୟକୁ-
ଲାଗେ ତାକୁ ବିଷମୟ,
ନିଜ ଦୋଷ ଗୁଣ ହୁଅଇ କାରଣ-
ଲାଗେ ଗ୍ଲାନି ପରାଜୟ ।(୨୬୪)

ପ୍ରତ୍ୟେକ ପ୍ରାଣୀର ନିଜସ୍ୱ ସ୍ୱଭାବ-
ତାକୁ ସାନ ବଡ଼ କରେ,
ମଣିଷ ସ୍ୱଭାବ ଛାଡ଼େନା ସହଜେ-
ଛାଡ଼ିବ ସେ ଯେବେ ମରେ ।(୨୬୫)

ସଂଯମେ ବଦଳେ ଖରାପ ପ୍ରକୃତି-
ମନ୍ଥର ତାହାର ଗତି,
ସ୍ୱଭାବ ଯାହାର ସରସ ସୁନ୍ଦର-
କୋଟିଏକୁ ଦିଏ ମୁକ୍ତି ।(୨୬୬)

ସୁଖରେ ରହିବା ସମସ୍ତେ ଚାହାନ୍ତି-
ସୁଖ କି ଦରବ ଶୁଣ,
ପାଇବା ଖାଇବା ଆରାମେ ରହିବା-
କେବଳ ସୁଖର କାମ ।(୨୬୭)

ଦୁଃଖ ପରେ ଯାହା ଧୀରେ ଆସିଥାଏ-
ତାକୁ ବୋଲାଯାଏ ସୁଖ,
ସୁଖବେଳେ କେବେ ଅଧୀର ନହୋଇ-
ମନକୁ ସଂଯତ ରଖ ।(୨୬୮)

ସୁଖ ମିଳିଥାଏ ପାଇବାରେ ସିନା-
ଦେବାରେ ଆନନ୍ଦ ମିଳେ,
ଆନନ୍ଦ ବସିଲେ ରାଜ ସିଂହାସନେ-
ସୁଖ ବସିଥାଏ ତଳେ ।(୨୬୯)

ମିଳିବାରୁ ଜାତ ସୁଖ ଅନୁଭବ-
ତାହା ସିନା କ୍ଷଣସ୍ଥାୟୀ,
ସନ୍ତୋଷରୁ ଜାତ ହୁଅଇ ଆନନ୍ଦ-
ସେ ଆନନ୍ଦ ଚିରସ୍ଥାୟୀ ।(୨୭୦)

ଶରୀରକୁ ସୁଖ ଆତ୍ମାକୁ ଆନନ୍ଦ-
ହୋଇଥାଏ ଗ୍ରହଣୀୟ,
ସୁଖର ସହିତ ଆନନ୍ଦ କଦାପି-
ହେବନାହିଁ ତୁଳନୀୟ ।(୨୭୧)

ଲକ୍ଷେ ଛୁଞ୍ଚି ଯୋଡ଼ି କାମ କଲେ କେବେ-
ହେବନି ଶାବଳ ସମ,
ଲକ୍ଷେ ଜୁଳୁଜୁଳା ପୋକ ମିଶିଗଲେ-
ଦେବନାହିଁ ଦୀପ କାମ ।(୨୭୨)

ଲକ୍ଷେବାର ଧୋଇ ସଫା କରୁଥିଲେ-
କୋଇଲା କି ଧଳା ହେବ?
ଲକ୍ଷେବାର କହି ମିଛକୁ ସତରେ-
କିଏ ବଦଳାଇ ଦେବ?(୨୭୩)

ଲକ୍ଷେ ଘାସ ମିଶି ବାଉଁଶ ହେବକି-
ଦୁବଘାସ ହେବ ବଣ?
ଲକ୍ଷେ ତାରା ଦେଖି ମଳିନ ହେବକି-
ଆକାଶର ତୋଫା ଜହ୍ନ ।(୨୭୪)

ଲକ୍ଷେବାର ବୁଡ଼ ଦେଲେ ଗଙ୍ଗାଜଳେ-
ପବିତ୍ର ହେବକି ପାପ?
ଲକ୍ଷେଥର ମିଛେ ଗାଳି ଦେଉଥିଲେ-
ହେବନାହିଁ ଅଭିଶାପ ।(୨୭୫)

ଚିକି ଚିକି ଦିଶେ ଯେତେ ଯା ଦରବ-
ସବୁ ନୁହେଁ ସୁନା ଗିନି,
ଧୋବ ଧୋବଳିଆ ବାବୁମାନେ ଯେତେ-
ସଭିଏ ନୁହଁନ୍ତି ଗୁଣୀ ।(୨୭୬)

ସବୁ ନଦୀ ଯାଇ ସାଗରେ ମିଶିନି-
ସବୁ ନୁହେଁ ଚିରସ୍ରୋତା,
ସତୀ ନାମ ଧାରୀ ସବୁ ନାରୀଗଣ-
ହେବେନାହିଁ ପତିବ୍ରତା ।(୨୭୭)

ସବୁଯାକ ଜ୍ଞାନ ନଥାଏ ବହିରେ-
ସବୁ ଫୁଲେ ନାହିଁ ବାସ,
ସବୁ ଜଙ୍ଗଲରେ ନଥାଏ ଚନ୍ଦନ-
ସବୁଠି ହୁଏନି ଚାଷ ।(୨୭୮)

ସବୁ ପଥରରୁ ମିଳେ ନାହିଁ ହୀରା-
ଶାମୁକାରେ ନାହିଁ ମୋତି,
ସବୁଦିନ ହୁଏ ନାହିଁ ଶୁଭଦିନ-
ସବୁ ନୁହେଁ ଜହ୍ନରାତି ।(୨୭୯)

ସବୁଯାକ ଲୋକ ହେବେନି ଭାବୁକ-
ସବୁ ହେବେନାହିଁ ଧନୀ,
ସବୁ ଭଲ ପାଇଁ ମିଳେନା ପ୍ରଶଂସା-
ସବୁ ହୁଏ ନାହିଁ ଜାଣି ।(୨୮୦)

ଉପଦେଶ ଦେବା ଯଥେଷ୍ଟ ପୂର୍ବରୁ-
ନିଜେ ହିଁ ପରୀକ୍ଷା କର,
ନିଜେ ନପାରିଲେ ଅନ୍ୟଠାରୁ ଆଶା-
କରିବା ହିଁ ବୃଥା ସାର ।(୨୮୧)

ଶିଶୁ ପାଇଁ ଯେଉଁ ନୀତିଶିକ୍ଷା ଥାଏ-
ତାକୁ ମାନିନେଲେ ବଡ଼,
ଜାତୀୟ ଚରିତ୍ର ନିଶ୍ଚେ ବଦଳିବ-
ନିଜ ଘର କଥା ଛାଡ଼ ।(୨୮୨)

ନିଜ ଅଧିକାର ନିଜର କର୍ତ୍ତବ୍ୟ-
ଦୁଇଟିକୁ ଜାଣିଥିବ,
କର୍ତ୍ତବ୍ୟର ପ୍ରତି ସଚେତନ ହେଲେ-
ଅଧିକାର ମିଳିଯିବ ।(୨୮୩)

ନିଜେ ହିଁ ନିଜକୁ ପଚାରି ବୁଝିବ-
କର୍ତ୍ତବ୍ୟ କରିଛି କେତେ?
ତାର ପ୍ରତିଦାନେ ଯାହା ବି ମିଳିଛି-
ପ୍ରାପତ ହେବକି ମୋତେ ।(୨୮୪)

ପାପଧନ ଯେତେ ଖୋଜେ ଯିବା ବାଟ-
କିଛି ନେବ ଡାକ୍ତର,
ଆଉ କିଛି ଧନ ନିଶା ପଣା ବେଶ୍ୟା-
ବାଣ୍ଟିନେବେ ନିଜ ଘର ।(୨୮୫)

ଅଧର୍ମ ଅନ୍ୟାୟେ ବଢ଼ିଥାଏ ଧନ-
ପାଣିରେ ତା ଦୀପ ଜଳେ,
ପୂରିଗଲେ ମାଣ ଭରିଗଲେ ଟିଣ-
ଓଲଟି ଯାଏ ସେ ବଳେ ।(୨୮୬)

ପୁରାଣ ସ୍ୱୀକୃତ କିଛି କିଛି ତଥ୍ୟ-
ମନେ ରଖିଥିଲେ ଭଲ,
ଅସଲ ବେଳକୁ କାମରେ ଲାଗିବ-
ବିପଦକୁ ହେବ ଡାଲ ।(୨୮୭)

ଶରୀର ଶରୀରୀ ମିଶିଗଲେ ଦୁହେଁ-
ମଣିଷ ଜୀବନ ପାଏ,
ଶରୀର ମରିଲେ ଶରୀରୀ ପଳାଏ-
ଅଜର ଅମର ସିଏ ।(୨୮୮)

ପଞ୍ଚଭୂତେ ସିନା ଏ ସାରା ସଂସାର-
ଗଢ଼ା ହୁଏ ଭଙ୍ଗା ହୁଏ,
ଜଳ ତେଜ ପୃଥ୍ୱୀ ଗଗନ ପବନ-
ସବୁ ବଦଳାଉ ଥାଏ ।(୨୮୯)

ମାଟିରୁ ଜନମ ଅଗ୍ନିରୁ ଦହନ-
ଜଳରୁ ଜୀବନ ଆସେ,
ସେହି ଜୀବନକୁ ଉଡ଼ାଏ ପବନ-
ଗଗନରେ ଯାଇ ଭାସେ ।(୨୯୦)

ଶରୀରକୁ ଅଗ୍ନି କରଇ ଦହନ-
ଜଳ ଦିଏ ବତୁରାଇ,
ପବନ ତାହାକୁ ଶୁଖାଇ ପାରଇ-
ମାଟି ଯାଏ ତାକୁ ଖାଇ ।(୨୯୧)

ଆକାଶର କିଛି କରିବାର ନାହିଁ-
କରେ ଖାଲି  ସହଯୋଗ,
ପଞ୍ଚଭୂତ ମିଶି ଶରୀର ନାଶନ୍ତି-
ଶରୀରୀ ହେଲେ ବିଯୋଗ ।(୨୯୨)

କାମନାରୁ ସିନା ଜନମଇ ଲୋଭ -
ତା ସଙ୍ଗରେ ମୋହ ମାୟା,
ଲୋଭରୁ ଜନମି ପାପ ମହା ଦ୍ରୁମ-
ବଢ଼ାଏ ତାହାର କାୟା । (୨୯୩)

ପାପ ଜନମାଏ ଦୁଃଖର ପସରା-
ସିଏ ନିତି ବଢୁଥାଏ,
ଦୁଃଖରୁ ଜନମେ ଚିନ୍ତା ମହାଦଶା-
ସୁଖକୁ  ଛଡ଼ାଇ ନିଏ । (୨୯୪)

ଚିନ୍ତାରୁ ଜନମେ ପରଶ୍ରୀକାତର-
ରାଗରୁ ଜନମେ ରୋଗ ,
ସେହି ରୋଗ ପାଇଁ ନାହିଁ ଉପଚାର -
ପାପୀ କରିଥାଏ ଭୋଗ। (୨୯୫)

କେତେ ପୁଣ୍ୟଫଳେ କେତେ ଦାନବଳେ-
ମିଳେ ମଣିଷ ଜନମ,
ମଣିଷ ପଣିଆ ଜନମିଲେ ହୃଦେ-
ଧନ୍ୟ ହୋଇବ ଜୀବନ । (୨୯୬)

ବ୍ରହ୍ମ ତ ଗୋଟିଏ ଅଦ୍ୱିତୀୟ ସେହି-
ତେତିଶ କୋଟି ତା' ନାମ,
ଯେଉଁ ନାମ ଧରି ଡାକିଲେ ଶୁଣନ୍ତି-
ଈଶ୍ୱର ଆଲ୍ଲା ରାମ । (୨୯୭)

ଦୁଇ ଗୋଟି ଜାତି ମଣିଷ ସମାଜେ-
ମହିଳା ଆଉ ପୁରୁଷ,
ଆଉ ଯେତେ ଜାତି ଧର୍ମ ସଂପ୍ରଦାୟ-
ଗଢ଼ିଛି ଏହି ମଣିଷ । (୨୯୮)

ପ୍ରେମ ତିନି ଜାତି ଗୋଟିଏ ଭକତି-
ପୀରତି ଦ୍ୱିତୀୟ ପୁଣ,
ତୃତୀୟ ଆସକ୍ତି ଶରଧାରୁ ଜାତ-
ଭଲ ପାଇବାର ଗୁଣ । (୨୯୯)

ଚାରି ଧାମ ମଧ୍ୟେ ଶ୍ରୀପୁରୁଷୋତ୍ତମ-
କୋଟି ତୀର୍ଥ ମଧ୍ୟେ ସାର,
ଆଉ ତିନି ଧାମ ଦ୍ୱାରିକା ବଦ୍ରିକା-
ଦକ୍ଷିଣରେ ରାମେଶ୍ୱର । (୩୦୦)

ପ୍ରାତ ସ୍ମରଣୀୟା ପାଞ୍ଚ ଜଣ ନାରୀ-
କୁନ୍ତୀ ତାରା ମନ୍ଦୋଦରୀ,
ଅହଲ୍ୟା ଦ୍ରୌପଦୀ ପଞ୍ଚସତୀ ନାମ-
ପାପ ତାପ ନିଏ ହରି । (୩୦୧)

ଷଡ଼ରିପୁ ମଧ୍ୟେ ପରଶ୍ରୀକାତର-
କରମକୁ କରେ ବାମ,
ଲୋଭ ମୋହ ମାୟା ଚାରି ରିପୁ ସଙ୍ଗେ-
ମିଶିଛନ୍ତି କ୍ରୋଧ କାମ । (୩୦୨)

ସାତ ଜଣ ନର ସଂସାରେ ଅମର-
ବଳି ବ୍ୟାସ ହନୁମାନ,
ପର୍ଶୁରାମ ଅଶ୍ୱତ୍‌ଥାମା କୃପାଚାର୍ଯ୍ୟ-
ରାମଭକ୍ତ ବିଭୀଷଣ । (୩୦୩)

କାନ୍ତ ଲୁହା ସଂଙ୍ଗେ ରଙ୍ଗ ମିଶିଥିବ-
ରହିଥିବ କିଛିସୁନା,
ରୂପା,ତମ୍ବା, ସିସା, ଲୌହ, ଇସ୍ପାତ-
ଅଷ୍ଟଧାତୁ ବୋଲି ଜଣା । (୩୦୪)

ନବଗ୍ରହ ମଧ୍ୟେ ବୃହସ୍ପତି ଗୁରୁ-
ଆଉ ବୁଧ ଶୁକ୍ର ଶନି,
ରାହୁ କେତୁ ଚନ୍ଦ୍ର ମଙ୍ଗଳ ରବି-
ସଭିଙ୍କୁ ଦେବତା ମାନି । (୩୦୫)

ମତ୍ସ୍ୟ, କୂର୍ମ ରୂପ ବରାହ, ନୃସିଂହ-
ବାମନ ରୂପରେ ହରି,
ରାମ, ପର୍ଶୁରାମ, ହଳଧର, ବୁଦ୍ଧ-
ଜଗନ୍ନାଥ ଅବତାରୀ । (୩୦୬)

ସବୁ ଦିଅଁ ପାଇଁ ନେଉଥିବ ଫୁଲ-
ଯଦି ଯିବ ପୂଜା କରି,
ସଜ ଫଳ ମୂଳ ଘୃତ ଦୀପ ସଙ୍ଗେ-
ଭୋଗ ଥାଳି ହାତେ ଧରି ।(୩୦୭)

ଗଣପତି ଦେବ ଆଦ୍ୟ ପୂଜ୍ୟ ସିଏ-
ଲଡ୍ଡୁରେ ତାଙ୍କର ମନ,
କଞ୍ଚାଖିର ଗୁଡ଼ କଦଳୀ ମିଶାଇ-
ଶିବେ କରିବ ଘର୍ଷଣ ।(୩୦୮)

ସତ୍ୟ ନାରାୟଣ ପଞ୍ଚାମୃତ ପ୍ରିୟ-
ଲକ୍ଷ୍ମୀଙ୍କର ପ୍ରିୟ ଖିରି ।
ମଙ୍ଗଳ ଗ୍ରହଙ୍କୁ ବାଡ଼ି ଦେଇଥିବ-
ଗୁଡ଼ରେ ଭୋଗ ତିଆରି ।(୩୦୯)

ସୂର୍ଯ୍ୟ ଦେବତାଙ୍କ ଅତିପ୍ରିୟ ଜାଣ-
ମସୁର ଡାଲିର ଭୋଗ ,
ଚନ୍ଦ୍ରଙ୍କୁ ପୂଜିବ ସିଝା ଖିର ଦେଇ-
ବୁଧଙ୍କର ପାଇଁ ମୁଗ ।(୩୧୦)

ଚଣା ଭୋଗ ପ୍ରିୟ ବୃହସ୍ପତି ଗୁରୁ-
ଶନିଙ୍କର ରାଶି ପିଠା,
ଇନ୍ଦ୍ରରାଜା ପାଇଁ ବାଢ଼ିବ ଶ୍ରଦ୍ଧାରେ-
ଚାଉଳର ଖିରି ମିଠା ।(୩୧୧)

ଗ୍ରାମ ଦେବତୀଙ୍କୁ ଛେନା ପଣା ଦେଇ-
ଘିଅଦୀପ ଜାଳି ଥିବ,
ଯେଉଁ ଅଞ୍ଚଳରେ ଯେଉଁ ପରଂପରା
ତାକୁ ମାନି ପୂଜା ଦେବ ।(୩୧୨)

ବିଷ୍ଣୁଙ୍କର ଷୋଳ ନାମର ମହିମା-
ରଖିଥିବ ସଦା ମନେ ,
ପୁରାଣ ଶାସ୍ତ୍ରରେ ପ୍ରମାଣ ରହିଛି-
ପଢ଼ିଥାଉ ଟିକେ ଜାଣେ ।(୩୧୩)

ରୋଗ ପାଇଁ ଯେବେ ଔଷଧ ନେବ-
କହିବ ବିଷ୍ଣୁ ଶ୍ରୀହରି,
ଭୋଜନ ପୂର୍ବରୁ ପ୍ରଣାମ କରିବ-
ଜନାର୍ଦ୍ଦନ ନାମ ଧରି ।(୩୧୪)

ନରସିଂହ ନାମ ସୁମରି ଚାଲିବ-
ଯାଉଥିବ ଯଦି ବନେ,
ଗୋବିନ୍ଦ ଗୋବିନ୍ଦ ଜପିବ ତୁଣ୍ଡରେ-
ଦୁଃଖ ଦେଖିଲେ ସପନେ ।(୩୧୫)

ଶୟନକୁ ଗଲେ ପଦ୍ମନାଭ କହି-
ଚରଣେ ଯିବ ଶରଣ,
ସଙ୍କଟ କାଳରେ ଡାକିବ ଉଚ୍ଚରେ-
ତ୍ରାହି ଶ୍ରୀମଧୁ ସୂଦନ ।(୩୧୬)

ଜଳର ଭିତରେ ବରାହ ବରାହ-
ପର୍ବତେ ରଘୁ ନନ୍ଦନ,
ବିଦେଶରେ ଥିଲେ ଜପିବ ମନରେ-
ତ୍ରିବିକ୍ରମ ତ୍ରିବିକ୍ରମ ।(୩୧୭)

ବିବାହ କାର୍ଯ୍ୟରେ ସୁମରିବ ହରି-
ବିଷ୍ଣୁ ପ୍ରଜାପତି ନାମେ ।
ପାଚନ କାଳରେ ଜଳ ଶାୟିନଙ୍କୁ-
ଚକ୍ରଧର ନାମ ରଣେ ।(୩୧୮)

ପ୍ରିୟଜନ ସଙ୍ଗେ ମିଳନ କାଳରେ-
ଶ୍ରୀଧର ନାମକୁ ଧରି,
ଯାତ୍ରା କାଳେ ଯଦି ବାମନ ଜପିବ-
ବିପଦରୁ ଯିବ ତରି ।(୩୧୯)

ସକଳ କାର୍ଯ୍ୟରେ ମାଧବ ମାଧବ-
ଜପୁଥାନ୍ତି ସାଧୁ ଜନ,
ଜୀବଗଲା ବେଳେ ଡାକିବ କାତରେ-
ରଖ ପ୍ରଭୁ ନାରାୟଣ ।(୩୨୦)

ଯେତେ ପାଠ ଆମେ ପଢ଼ି ସାରିଲୁଣି-
ସେତିକିରେ ନୁହେଁ ଶେଷ,
ଯେତେ ରାଜ୍ୟ ବୁଲି ଦେଖି ସାରିଲେ ବି-
ରହିଯିବ କିଛି ଦେଶ ।(୩୨୧)

ଯେତେ ଜାଗା ଆମେ ଯାଇଛୁ ଗାଡ଼ିରେ -
ରହିଅଛି ବାକି ବେଶି,
ଯେତେ ଜୀବ ନିଜ ଆଖିରେ ଦେଖିଛୁ-
ରହିଛନ୍ତି ରାଶି ରାଶି ।(୩୨୨)

ଯେତେ ଧନ ଆମେ ରୋଜଗାର କଲୁ-
ସିଏ ତ ହାତର ମଳି,
ଯେତେ ଦୁଃଖ ଆମେ ଭୋଗ କରିଗଲୁ-
ରହିଛି ତାହାକୁ ବଳି ।(୩୨୩)

ଯେତେ କଥା ଆମେ କହି ସାରିଲୁଣି-
ସେ ସବୁ କି ଭଲ କୁହ,
ଯେତେ ଗୀତ ଆମେ ଶୁଣିଛୁ ପଢ଼ିଛୁ -
ସବୁ ତ ସେତିକି ନୁହଁ ।(୩୨୪)

ମନ୍ଦିର ଭିତର ନିୟମ ମାନିବ-
ପାଦୁକା ପିନ୍ଧିବ ନାହିଁ,
ଗୋଡ଼ ମୁହଁ ଧୋଇ ଦୁଇ ହାତଯୋଡ଼ି -
ପ୍ରଣାମ କରିବ ଯାଇ ।(୩୨୫)

ଉଚ୍ଚ ସ୍ୱରେ କେବେ କାହାର ପ୍ରଶଂସା-
କରିବନି ନିନ୍ଦାଗାନ,
ମନ୍ଦିର ବେଢ଼ାରେ କାହାରିକୁ କେବେ-
ଦେବନାହିଁ ଅପମାନ ।(୩୨୬)

ଦେବ ଦେବୀଆଡ଼େ ପାଦକୁ ବଢ଼େଇ-
ବସିବନି ଶୋଇବନି,
ମଜା ମଉଜ କି କଉତୁହଳରେ-
ଅକଥା ବି କହିବନି ।(୩୨୭)

ମନ୍ଦିରକୁ ଯାଇ ଏଣେ ତେଣେ ଚାହିଁ-
ହେବନାହିଁ ଆନମନା,
ଦେବତାଙ୍କୁ ପୁଣି ଅପମାନ ହେବ-
ପିନ୍ଧିଥିଲେ ଚିରା କନା ।(୩୨୮)

ନିଜ ଲେଖା ଗୀତ ଗାଇବନି କେବେ-
ମନ୍ଦିର ଭିତରେ ବସି,
ଗୁରୁ ନିନ୍ଦା କିମ୍ବା ପର ଘରକଥା-
କହିବନି ହସି ହସି । (୩୨୯)

କମ୍ବଳ ଚାଦର ଘୋଡ଼ିହେଇ କିବା-
ଗର୍ବ ଭରି ନିଜ ମନେ,
ମନ୍ଦିର ପ୍ରବେଶ କରିବନି କେବେ-
ଭିକ୍ଷା ଦାନକରି ଆନେ ।(୩୩୦)

ମନ୍ଦିର ଭିତରେ ହସ କାନ୍ଦ ପୁଣି-
କଟୁ ଭାଷା କୁହା ମନା,
ଶକତି ଥିଲେ ବି ଭକତି ନରଖି-
ହେବନାହିଁ ଆନମନା ।(୩୩୧)

ମନ୍ଦିର ବେଢ଼ାରେ ମଳ ମୂତ୍ର ତ୍ୟାଗ-
ମନା ଥାଏ ଧୂମ ପାନ,
ପୂଜା ପାର୍ବଣକୁ ବେଖାତିର କଲେ-
ନାଶ ଯାଏ ଥିବା ପୁଣ୍ୟ ।(୩୩୨)

ମନ୍ଦିର ଭିତରେ ପ୍ରବେଶ ପୂର୍ବରୁ-
ନିଜକୁ ମଣିବ ଦାସ,
ବାହାରେ ତିଆରି ଭୋଗ ନେବ ନାହିଁ-
ମୁକ୍ତି ମଣ୍ଡପ ଆଦେଶ ।(୩୩୩)

ବରଷକ ମୂଲ କହି ପାରିବ ଯେ-
ପଢ଼ି ଦେଇନି ପରୀକ୍ଷା,
ମାସକର ମୂଲ କହିବ ସେ ମାଆ-
ନାହିଁ ଯାହାର ସୁରକ୍ଷା ।(୩୩୪)

ପକ୍ଷଟିର ମୂଲ ଜାଣେ ବନବାସୀ-
ଜହ୍ନରେ ଯେ ବାଟ ଚିହ୍ନେ ।
ସପ୍ତାହର ମୂଲ ଜାଣେ ଋଣଖିଆ-
କରଜ ସୁଧ ଯେ ଗଣେ ।(୩୩୫)

ଦିନଟିର ମୂଲ ଜାଣିଛି ମୂଲିଆ,
ମଜୁରୀ ପାଏନି ଯିଏ ,
ଘଣ୍ଟାକର ମୂଲ ଜାଣେ ପରୀକ୍ଷାର୍ଥୀ-
କି କଷ୍ଟ ପାଇଛି ସିଏ ।(୩୩୬)

ମିନିଟର ମୂଲ ଜାଣେ କଳାକାର-
ବଦଳି ଯାଏ ତା ଭାଗ୍ୟ ,
ସେକେଣ୍ଡର ମୂଲ ଜାଣଇ ଖେଳାଳି-
ହେଳାରୁ ହୁଏ ଅଯୋଗ୍ୟ ।(୩୩୭)

ସରଳ ହୃଦୟେ ସହଜେ ଈଶ୍ୱର-
ପ୍ରବେଶ କରନ୍ତି ଯାଇ,
ଈଶ୍ୱର ଭଜନ ଜଣାଣ କୀର୍ତ୍ତନ-
ଲୋଡ଼ାନାହିଁ ତାର ପାଇଁ ।(୩୩୮)

ଅସୂୟା ଭାବନା ଅଶୁଭ କାମନା-
କରୁଥାନ୍ତି ଯେଉଁ ପ୍ରାଣୀ,
ତାଙ୍କର ପ୍ରାର୍ଥନା ବିକଳ କାନ୍ଦଣା-
ପ୍ରଭୁ ପାରନ୍ତିନି ଶୁଣି ।(୩୩୯)

ଜ୍ଞାନ ଅହଂକାରୀ ଧର୍ମ ଧ୍ୱଜାଧାରୀ-
ନୁହନ୍ତି ପ୍ରଭୁଙ୍କ ପ୍ରିୟ,
ପ୍ରିୟ ହେବା ପାଇଁ ଲୋଡ଼ା ହୋଇଥାଏ-
ଖୋଲା ନିର୍ମଳ ହୃଦୟ ।(୩୪୦)

ପର ଦୋଷ ଗୁଣ ପର ନିନ୍ଦା ଗାନ-
କରୁଥିବ ସଦା ଯିଏ,
ନିଜ ଭଲ ଗୁଣ କର୍ତ୍ତବ୍ୟକୁ ଭୁଲି-
ନିମ୍ନଗାମୀ ହୁଏ ସିଏ ।(୩୪୧)

ବାଲ୍ୟକାଳୁ ଯିଏ ନୀତି ଶିକ୍ଷା କରେ-
ଭିଜିଥାଏ ତାର ମନ,
ମଧ୍ୟମ ବୟସେ ସୁଫଳ ମିଳଇ-
ବୃଦ୍ଧ କାଳେ ବଢ଼େ ମାନ ।(୩୪୨)

କଞ୍ଚା ହାଣ୍ଡି ସମ ଶିଶୁ ମନଥାଏ-
ସଫା ସିଲଟକୁ ସରି,
ଧାରଣ ଶକତି ପ୍ରବଳ ଥିବାରୁ-
ଟାଣେ ଚୁମ୍ବକର ପରି ।(୩୪୩)

ବାଲ୍ୟକାଳୁ ତାର ସଦାଚାର ପଥେ-
ପକାଇବ ନ୍ୟାୟ ଭିତ୍ତି,
ଆଧ୍ୟାତ୍ମିକ ଜ୍ଞାନ ସଂସାର ବିଜ୍ଞାନ-
ଶିଖାଇବ ଶାସ୍ତ୍ରନୀତି । (୩୪୪)

ସଂସାରଟି ନୁହେଁ ଧନର ସର୍ବସ୍ୱ-
ଅଛି ଜ୍ଞାନ କର୍ମ ଧର୍ମ,
ବନ୍ଧା ଏହି ସୃଷ୍ଟି ଗୋଟିଏ ସୂତ୍ରରେ-
ମାଧ୍ୟମ ମାନବ ପ୍ରେମ ।(୩୪୫)

ଶିଶୁ ମନେ ଦେବ ଅମୃତ ପରଶି-
ବାଞ୍ଛିବ ସେ ଚିରଦିନ,
ଚାଖିଲେ ଅମୃତ ମାନବ ଜାତିର-
କରୁଥିବ ଜୟଗାନ ।(୩୪୬)

ଆଦର୍ଶ ମଣିଷ ହେବ ସିନା ଶିଶୁ-
ତ୍ୟାଗ କରିବାକୁ ପଡ଼େ,
ପରିବେଶ ଆଉ ଭୋଜନ ପ୍ରଭାବ-
ଶିଶୁର ମନକୁ ଗଢ଼େ ।(୩୪୭)

ସାତ୍ତ୍ୱିକ ଆହାର ଗୃହର ସଂସ୍କାର-
ଭଲ ପାଇଁ ପୁରସ୍କାର,
ମନ୍ଦ କାମ ପାଇଁ ନିନ୍ଦା ସଚେତନ-
କରୁଥିବ ବାରବାର ।(୩୪୮)

ବିନା ଶ୍ରମ ଧନ କୁପଥ ଅର୍ଜନ-
ହେବ ଶିଶୁ ପାଇଁ ଭାର,
ଭବିଷ୍ୟ ଅନ୍ଧାର କରିବ ନିଶ୍ଚୟ-
ଆଗୁ ହେବ ହୁସିଆର ।(୩୪୯)

କଷ୍ଟାର୍ଜିତ ଧନ ଯାଏନାହିଁ କାହିଁ-
ଫେରିଆସେ ବୁଲିବୁଲି,
ମୂଳ ଧନ ଆସେ ସୁଧର ସହିତ-
ଆଜି ନହୋଇଲେ କାଲି ।(୩୫୦)

ମଇଳା ଲାଗିଲେ ମଳିନ ଦିଶଇ-
ସୁନା ହୀରା ମୋତି ମଣି,
ମଇଳା ମିଶିଲେ ଗୋଳିଆ ଦିଶଇ-
କାଚ ପରି ସଫା ପାଣି ।(୩୫୧)

ଦୁଇ ଆଖି ସିନା ଦେଖି ପାରେନାହିଁ-
ଥିଲେ ମୋଟା ଆବରଣ,
ଆବରଣ ବିନା ଦେଖି ହୁଏନାହିଁ-
ଅନ୍ଧକାର ତା କାରଣ ।(୩୫୨)

ଅଶିକ୍ଷା ଅନ୍ଧାର ଥିଲେ କୁସଂସ୍କାର-
ଦିଶେନାହିଁ ସବୁଥାଇ,
ମାୟା ଆବରଣ ଢାଙ୍କିଥାଏ ତାକୁ-
ଦେଖିବାକୁ ଦିଏନାହିଁ ।(୩୫୩)

ସଫଳତା ପାଇଁ ବିଭିନ୍ନ ଉପାୟ-
ହାତକୁ ନେବାକୁ ହୁଏ,
ଗଧପାଦ ଧରି କାମ ଉଠାଇବ-
ଶାସ୍ତ୍ର ଉପଦେଶ ଦିଏ ।(୩୫୪)

ଦୁଷ୍ଟଜନ ସଙ୍ଗେ ଦୁଷ୍ଟପ୍ରୀତି ରଖି-
ସାବଧାନେ ଚଳୁଥିବ,
ଶତ୍ରୁତା ଥିଲେ ବି କଳହ ନକରି-
କଉଶଳେ କାମ ନେବ ।(୩୫୫)

ନୀଚଜନ ସାଥେ ବନ୍ଧୁତା ରଖିଲେ-
ନୀଚପ୍ରୀତି ହେବ ଲାଭ,
ଦୋଷଗୁଣ ଦେଖି ପ୍ରତିଶୋଧ ନେଇ-
ଦେବ ପୁଣି ପରାଭବ ।(୩୫୬)

ପ୍ରାଣରକ୍ଷା ପୁଣି ଦେଶ ହିତ ପାଇଁ-
ଯଦି ମିଛ ଲୋଡ଼ାହୁଏ,
ସେହି ମିଛ ପାଇଁ ପାପ ଲାଗେନାହିଁ-
ଶାସ୍ତ୍ର ଏ କଥାଟି କହେ ।(୩୫୭)

ଶରଣାଗତକୁ ତା ଶତ୍ରୁ ହାତରେ-
ସମର୍ପି ଦେବନି ଜାଣି,
ଲଗାଇଲା ଗଛ ଫଳନ୍ତି ଲତାକୁ-
ପକାଇବ ନାହିଁ ହାଣି ।(୩୫୮)

ହତ୍ୟାକାରୀଠାରୁ ଖାଦକ ନିଷ୍ଠୁର-
ଯିଏ ଖାଏ ହାଡ଼ ମାଂସ,
ଚୋରଠୁ ନିଷ୍ଠୁର ବିଶ୍ୱାସ ଘାତକ-
ଯିଏ କରେ ସର୍ବନାଶ ।(୩୫୯)

ଚୋର ସିନା ଚୋରି କରିନେବ ଧନ-
ହୋଇ ପାରିବ ପୂରଣ,
ବିଶ୍ୱାସ ଘାତକ ସମସ୍ୟା କରିଲେ-
ନାହିଁ ତାର ସମାଧାନ ।(୩୬୦)

ଜୀବନ୍ତ ମରଣ ଅସହ୍ୟ ଯନ୍ତ୍ରଣା-
ଦେଇଥାଏ ଅପମାନ,
ନିଜଲୋକ ଯଦି ଜାଣି ନଜାଣିଲା-
ଛଟପଟ ହୁଏ ମନ ।(୩୬୧)

ଅନୁକୂଳ ସିନା ସୁଖଦାୟୀ ହୁଏ-
ପ୍ରତିକୂଳ ଦୁଃଖଦାୟୀ,
କେବେ କେବେ ପୁଣି ପ୍ରତିକୂଳ ଆସେ-
ସୁଖ ଅନୁଭୂତି ନେଇ ।(୩୬୨)

ନୂତନ ଭାବନା ନୂତନ ପ୍ରେରଣା-
ଆଣିପାରେ ପ୍ରତିକୂଳ,
ପ୍ରତିକୂଳ ପଥେ ଯିବ ଥରେ ଥରେ-
ଦେଖି ଚାହିଁ ବେଳ କାଳ ।(୩୬୩)

ପ୍ରତିକୂଳ ପାଶେ ଦୁଃଖ ଥାଏ ସିନା-
ମନରେ ସାହସ ଦିଏ,
ଆତ୍ମ ବିଶ୍ୱାସକୁ ଜାଗ୍ରତ କରାଏ-
ମଣିଷ ଅଭିଜ୍ଞ ହୁଏ ।(୩୬୪)

ଦୁଃଖକୁ ଯେ ନିଜ ଗୁରୁ ମନେକରେ-
ତାକୁ ଲାଗେ ସବୁ ସୁଖ,
ଈଶ୍ୱର ବିଶ୍ୱାସ ଅନ୍ତଃଶକ୍ତି ବୃଦ୍ଧି-
କରିପାରେ ଏକା ଦୁଃଖ ।(୩୬୫)

ସଂଘର୍ଷ ବିହୀନ ଅସାର ଜୀବନ-
ଅନୁକୂଳେ ଚାଲେ ଗଡ଼ି,
ପ୍ରତିକୂଳ ସ୍ଥିତି ଖାଣ୍ଟି ସୁନା କାଢ଼େ-
ସୁନାରୀ ନିଆଁରେ ପୋଡ଼ି ।(୩୬୬)

ବିଫଳତା ସିନା ସଫଳତା ପାଇଁ-
ଦୃଢ଼ ଭିତ୍ତିଭୂମି ଗଢ଼େ,
କଷ୍ଟ କରିଥିଲେ କୃଷ୍ଣ ରୂପୀ ଅର୍ଥ-
ବଳେ ଆସି ହାତେ ପଡ଼େ ।(୩୬୭)

ଅଗ୍ନିଦେବ ପ୍ରତି ହୋଇଲେ ବିମୁଖ-
କାଠ ହୁଅଇ କୋଇଲା,
ବିଦ୍ୟା ପ୍ରତି ଯିଏ ସର୍ବଦା ବିମୁଖ-
ନିଶ୍ଚୟ ମୂର୍ଖ ହୋଇଲା ।(୩୬୮)

ମାତା ପିତା ପ୍ରତି ହୋଇଲେ ବିମୁଖ-
ପୁତ୍ର ହୁଏ ପିତୃଦ୍ରୋହୀ,
ଗୁରୁଶିକ୍ଷା ପ୍ରତି ହୋଇଲେ ବିମୁଖ-
ଶିଷ୍ୟ ଯାଏ ନାଶ ହୋଇ ।(୩୬୯)

କ୍ଷେତ ପ୍ରତି ଚାଷୀ ବିମୁଖ ହୋଇଲେ-
ଫସଲ ଆସିବ କାହୁଁ,
ଜଳପ୍ରତି ରୋଗୀ ବିମୁଖ ହୋଇଲେ-
ପ୍ରାଣ ଯିବ ଚାହୁଁ ଚାହୁଁ ।(୩୭୦)

ଆଲୋକ ପ୍ରତି ଯେ ବିମୁଖ ହୁଅଇ-
ସିଏ ନିଶାଚର ପ୍ରାଣୀ,
ନିଶା ଦରବକୁ ବିମୁଖ ନହେଲେ-
ନିଜକୁ ମାରେ ସେ ଜାଣି ।(୩୭୧)

ସାଧୁ ସନ୍ଥ ସଦା ଧନକୁ ବିମୁଖ-
ପାପୀ ସତ୍ୟକୁ ବିମୁଖ,
କର୍ମବୀର ସିଏ ସୁଖକୁ ବିମୁଖ-
ତଥାପି ନଥାଏ ଦୁଃଖ ।(୩୭୨)

ତୁମେ ହିଁ ତୁମର ଶତ୍ରୁ ହୋଇଥାଅ-
ତୁମେ ହିଁ ମିତ୍ର ତୁମର,
ନିଜେ ହିଁ ନିଜର ମାଲିକ ତୁମେ ହିଁ-
ଗୁରୁ ଦେବତା ନିଜର ।(୩୭୩)

ଶତ୍ରୁ ମିତ୍ର ଭାବ ନିଜ ପାଇଁ ସିନା-
ଗୁରୁ ପାଇଁ ଲୋଡ଼ା ଜ୍ଞାନ,
ଜ୍ଞାନ ଆହରଣେ ହୋଇଥିଲେ ଧନୀ-
କରିବ କାହାକୁ ଦାନ ।(୩୭୪)

ଗୁରୁ ବୋଲି ପୁଣି କାହାରିକୁ କେବେ-
କରିବ କିଆଁ ବରଣ?
ମନକୁ ନିଜର ଗୁରୁ ମଣୁଥିଲେ-
ଅଭାବ ହୁଏ ପୂରଣ ।(୩୭୫)

ମନକୁ ପଚାରି ବିବେକ ବିଚାରି-
କରୁଥିଲେ କର୍ମଯୋଗ,
ତହିଁରୁ ପ୍ରକାଶ ହେବ ଜ୍ଞାନଯୋଗ-
ଭକ୍ତିଯୋଗ ଉପଭୋଗ ।(୩୭୬)

ଜଳର ଗତିଟା ତଳକୁ ତଳକୁ-
ଯଥା ପରଶ୍ରୀକାତର,
ଘୃତ ଦୀପ ଶିଖା ଗତି ଉପରକୁ-
ଯଥା ଜ୍ଞାନ ସୁବିଚାର ।(୩୭୭)

ବୟସ ବଢ଼ିଲେ ଆୟୁଷ କମଇ-
ପ୍ରକୃତିର ଏହି ନୀତି,
ଚେତନା ବଢ଼ିଲେ ମୂଢ଼ତା କମଇ-
ଆଲୋକେ ଅନ୍ଧାର ରାତି ।(୩୭୮)

ପଞ୍ଚ ମହାଭୂତ ବାଛି ନେଇଛନ୍ତି-
ନିଜ ନିଜ ପାଇଁ ସ୍ତର,
ଉପରେ ଆକାଶ ବାୟୁ ଚଳାଚଳ-
ମାଟି ତଳେ ଜଳ ଧାର ।(୩୭୯)

ଅଗ୍ନି ତେଜ ଦେଇ ସଂସାର ଚଳାଏ-
ନାହିଁ ତାର ନିଜ ସ୍ଥାନ,
ଶରୀର ଭିତରେ ରୁଧିର ରୂପରେ-
କରୁଥାଏ ତାପଦାନ ।(୩୮୦)

ଈଶ୍ୱର ବିଶ୍ୱାସ  ମନର ବଳକୁ-
ଦୃଢ଼ କରେ ସଦାକାଳେ,
ଜିତିବି ଭାବନା ଜାଗ୍ରତ ରହିଲେ-
ଜିତିହୁଏ ମନୋବଳେ ।(୩୮୧)

ମନେଥିଲେ ଦ୍ୱନ୍ଦ୍ୱ ପରାଜୟ ଭାବ-
ପ୍ରତିଯୋଗିତାକୁ ଭୟ,
ଦୁର୍ବଳ ହେଲେ ବି ପ୍ରତିଦ୍ୱନ୍ଦ୍ୱୀ ଦିନେ-
ବିନା ଯୁଦ୍ଧେ ଲଭେ ଜୟ ।(୩୮୨)

ପ୍ରତିଯୋଗିତାରେ ଭାଗନେବା ଲାଗି-
ସୁଯୋଗ ମିଳିଲେ କେବେ,
ପ୍ରସ୍ତୁତ ହୋଇକି ଯିବ ତ ନିଶ୍ଚୟ-
ମନଟାଣ କର ଆଗେ ।(୩୮୩)

ପଡ଼ି ଉଠୁଥିଲେ ଚାଲି ଶିଖିହୁଏ-
ଉଠିବାର ଏ ମନ୍ତର,
ପରୀକ୍ଷାଟି ସିନା ମୂର୍ଖ ପାଇଁ ଦୁଃଖ-
ସୁଯୋଗ ଭାଗ୍ୟବନ୍ତର ।(୩୮୪)

ଭ୍ରମରକୁ ଦେଖ ଫୁଲେ ଫୁଲେ ଉଡ଼ି-
ମଉଜରେ ମଧୁ ପିଏ,
ସ୍ୱାର୍ଥପର ଗୁଣେ ରୂପ କଦାକାର-
କିଏ ତାକୁ ଭଲ ପାଏ? ।(୩୮୫)

ମହୁମାଛିଟିଏ ଦିନ ରାତି ଉଡ଼ି-
ସଞ୍ଚେ ମଧୁ ପରପାଇଁ,
ସେହି ମଧୁ ଲାଗେ ଦେବତା ସେବାରେ-
ଧନ୍ୟ ମାଛି ଜନ୍ମ ପାଇ ।(୩୮୬)

ଦୁର୍ଜନ ଭାଷାରେ ଫୁଲେ ଥିଲା ମଧୁ-
ଆଣିଛି ସେ ଖାଲି ବୋହି,
ନିଜ ବୁଦ୍ଧି କିବା ଶକତି ବଳରେ-
କିଛି କରି ପାରେନାହିଁ ।(୩୮୭)

ବୁଢ଼ିଆଣୀ ନିଜ ନାଭିରୁ କାଢ଼ଇ-
ଅସରନ୍ତି ଜାଲ ସୂତା,
ସେହି ସୂତା ମାରେ ଅସଂଖ୍ୟ ପତଙ୍ଗ-
କେବଳ ଖାଇବା ଚିନ୍ତା ।(୩୮୮)

ବୁଢ଼ିଆଣୀ କିବା ଭ୍ରମର ଚରିତ୍ର-
ସଂସାରେ ଅଭାବ ନାହିଁ,
ତଥାପି ମଣିଷ ମହୁମାଛି ମାରେ-
ତୁଣ୍ଡେ ନିଆଁ ହୁଳା ଦେଇ ।(୩୮୯)

ପ୍ରତିଭାବାନକୁ ହେଳା କରିବନି-
ଦେବ ତାକୁ ପ୍ରୋତ୍ସାହନ,
ନବ ଉଦଭାବନ ମାନବ କଲ୍ୟାଣ-
ହେଉଥିଲେ ଅନୁମାନ ।(୩୯୦)

ସାହିତ୍ୟ ସଂସ୍କୃତି କଳାର ପୂଜାରୀ-
ବଢ଼ାନ୍ତି ଜାତିର ମାନ,
ତ୍ୟାଗ ନିଷ୍ଠା ଦେଖି କାମକୁ ପରଖି-
ଦେଉଥିବ ସନମାନ । (୩୯୧)

କ୍ଷୁଦ୍ର ବୀଜଟିଏ ମହାଦ୍ରୁମ ହୁଏ-
ମେଘ କ୍ଷୁଦ୍ର ଜଳ ବିନ୍ଦୁ,
କ୍ଷୁଦ୍ର ଜଳ ବିନ୍ଦୁ ମିଶି ହୋଇଥାଏ-
ବୃହତ ଆକାର ସିନ୍ଧୁ ।(୩୯୨)

କ୍ଷୁଦ୍ର ଶିଶୁ ଦିନେ ହୁଏ ସୁପୁରୁଷ-
ଧରେ ଶାସନର ଡୋରୀ,
କ୍ଷୁଦ୍ର ଜୀବାଣୁଟି ଶରୀରରେ ପଶି-
ମଣିଷକୁ ଦିଏ ମାରି ।(୩୯୩)

କ୍ଷୁଦ୍ର ମନେ କରି ରୋଗକୁ କଦାପି-
କରିବନି ବେଖାତିର,
କ୍ଷୁଦ୍ର ଅଗ୍ନିକଣା ଛାଡ଼ି ଦେଇଥିଲେ-
ପୋଡ଼ି କରେ ଛାରଖାର ।(୩୯୪)

ଅଜ୍ଞାତ ଜନକୁ ଘରେ ବାସ ଦେଇ-
ଖାଇଲେ ତାସଙ୍ଗେ ମିଶି,
ଜାଣିବ ବିପଦେ ପଡ଼ି ସାରିଲଣି-
ପାରିବନି ଆଉ ଖସି ।(୩୯୫)

ପିତୃ ପୁରୁଷଙ୍କୁ ଶ୍ରଦ୍ଧାର ସହିତ-
ଶ୍ରାଦ୍ଧ ଦାନ କରୁଥିବ ,
ପିତାମହ ମାତାମହ ପରିବାର-
ନାମ ମନେ ରଖିଥିବ ।(୩୯୬)

ଆଖିର ମହତ୍ତ୍ୱ ଦାନ୍ତର ମହତ୍ତ୍ୱ-
ଜଣା ପଡ଼େ ନଷ୍ଟ ହେଲେ,
ଜହ୍ନର ଆଲୋକ ମୂଲ୍ ଜଣାପଡ଼େ-
ଅମାବାସ୍ୟା ତିଥି ଥିଲେ ।(୩୯୭)

ସବୁ ସହିଥାନ୍ତି ଜଗତ କରତା-
ସହି ପାରନ୍ତିନି ଗର୍ବ,
ମହାବଳୀ କିବା ପ୍ରିୟ ଭକ୍ତ ହେଉ-
ଗର୍ବକୁ କରନ୍ତି ଖର୍ବ ।(୩୯୮)

ହାତେ ମାପି ଯଦି ଚାଖଣ୍ଡେ ଚାଲିବ-
ବିପଦ ନଥିବ ପଥେ,
ଅଭ୍ୟାସରେ ହୁଏ ଅସାଧ୍ୟ ସାଧନ-
ସୁଖରେ ଜୀବନ ବିତେ ।(୩୯୯)

ଆଞ୍ଜୁଳାଏ ଜଳ ସାଗରରୁ ନେଲେ-
କମିଯାଏ ନାହିଁ ଯଥା,
ଧନ ଶ୍ରମ କିବା ବଚନ ଦାନରେ-
କମେନାହିଁ ରହେ କଥା ।(୪୦୦)

ସଂସାରରେ ଥିବ ଯେତେଦିନ ପାଇଁ-
ଆନନ୍ଦ ରଖିବ ମନ,
ଆନନ୍ଦର ଅର୍ଥ ସୁଖ ନୁହେଁ ବୋଲି-
ମନେରଖ ସାଧୁଜନ ।(୪୦୧)

ଧନ ଅର୍ଜିଥିଲେ ଭୋଗ କରେ ପୁତ୍ର-
କରଜକୁ ସୁଝିଥାଏ,
ପାପ ପୁଣ୍ୟ ଯଦି ବାକି ଥାଏ କିଛି-
ପୁତ୍ର ତାକୁ ପାଇ ଯାଏ ।(୪୦୨)

ବଡ଼ିଲା କାନିଟି ସବୁଠିକୁ ପାଏ-
ଅଧିକ ଟିକିଏ ଥାଉ,
ବଡ଼ିଲା କାମଟି ସୁଖଦାୟୀ ହୁଏ-
କେହି ହେଲେ ସୁଖ ପାଉ ।(୪୦୩)

ପେଟ ପୂରିଗଲେ ଦୁର୍ଜନେ କହନ୍ତି-
ବଢ଼ିଆ ହେଲା ଭୋଜନ,
ସୁଜନେ ଦେଖନ୍ତି ଖାଇବା ପୂର୍ବରୁ-
ରହିଛନ୍ତି କେତେଜଣ ?(୪୦୪)

ଆଧ୍ୟାତ୍ମିକ ଭାବ ଅଭାବ ହୋଇଲେ-
ଅହଂଭାବ ବଢ଼ିଯାଏ,
ଜାଣିବା ଲୋକ ହିଁ ଅଳପ କହନ୍ତି-
କାର୍ଯ୍ୟରେ ବିଶ୍ୱାସ ଥାଏ ।(୪୦୫)

ଭବିଷ୍ୟତ ବାଣୀ ଅତୀତ କାହାଣୀ-
ଜାଣିବାକୁ ହୁଏ ମନ,
ରାମ ଭବିଷ୍ୟତ ଜାଣି ଦଶରଥ-
ବିକଳେ ଛାଡ଼ିଲେ ପ୍ରାଣ ।(୪୦୬)

ପ୍ରତ୍ୟେକ ଦିବସ ମଙ୍ଗଳ ଦାୟକ-
ପ୍ରତ୍ୟେକ ମୁହୂର୍ତ୍ତ ଶୁଭ,
ସକଳ କାର୍ଯ୍ୟରେ ମାଧବ ସୁମରି-
ନିଜ କାର୍ଯ୍ୟ କରିଯିବ ।(୪୦୭)

ବିହି ଲେଖିଥାଏ ଯାହା ପାଇଁ ଯିଏ-
ଥୁଆ ହୋଇ ରହିଥାଏ,
ଯୋଗ ଭୋଗ ସବୁ ପୂର୍ବ ନିର୍ଦ୍ଧାରିତ-
ତହିଁରୁ ଅନ୍ୟଥା ନୁହେଁ । (୪୦୮)

ତିନି ତୁଣ୍ଡେ ଛେଳି କୁକୁର ହୁଅଇ-
ମାଙ୍କଡ଼ କହଇ କଥା,
ପାଣିରେ ଭାସଇ ମୁଗୁନି ପଥର-
ଶୁଣିଲେ ଲାଗଇ ବ୍ୟଥା ।(୪୦୯)

ଯାହା ହୋଇନାହିଁ କେବେ ହେବନାହିଁ-
ଯଦି କେବେ ଶୁଣ ଦେଖ,
ତାକୁ ସତ ମଣି ପ୍ରଘଟ କରିଲେ-
ମିଳେ ଅପମାନ ଦୁଃଖ ।(୪୧୦)

ଉତ୍ତମ ପୁରୁଷ ଖୋଜି ଲୋଡ଼ି ରଖେ-
ସାତ ପୁରୁଷର ନାଆଁ,
ମଧ୍ୟମ ପୁରୁଷ ଜେଜେ ଅଜା ଚିହ୍ନେ-
ଜାଣେ ମାମୁଘର ଗାଆଁ ।(୪୧୧)

ଅଧମ କେବଳ ମନେ ରଖିପାରେ-
ନିଜ ବାପା ମାଆ ନାମ,
ନିଜ ନାମ ସଂଗେ ସାଙ୍ଗ ସାଥୀ ନାମ-
ଜାଣଇ ଅଧମା ଧମ ।(୪୧୨)

ନିଜ ନାମେ ଯିଏ ପରିଚିତ ହୁଏ-
ଉତ୍ତମ ପୁରୁଷ ସେହି,
ପିତାଙ୍କ ନାମରେ ମଧ୍ୟମ ପୁରୁଷ-
ଉଚ୍ଚ ଆସନେ ବସଇ ।(୪୧୩)

ଅଧମ ପୁରୁଷ ନେତା ନାମ ଧରି-
ନିଜ କାମ କରିନିଏ,
ଶଳା ପତ୍ନୀ ନାମ ଧରି ଯେ ଉଦ୍ଧରେ-
ଅଧମା ଧମଟି ସିଏ ।(୪୧୪)

ଉତ୍ତମ ପୁରୁଷ ନିଜର ଧର୍ମକୁ -
ଶ୍ରଦ୍ଧା କରେ ପ୍ରାଣ ଭରି,
ମଧ୍ୟମ ପୁରୁଷ ନିଜ ଧର୍ମେ ଥାଏ-
ଅନ୍ୟକୁ ଆଦର କରି ।(୪୧୫)

ଅଧମ ପୁରୁଷ ମନଟି ଚଞ୍ଚଳ-
ଧର୍ମକୁ ନେଇ ସେ ଲଢ଼େ,
ଅଧମା ଧମ ଯେ ସ୍ୱାର୍ଥ ଟିକେ ପାଇଁ-
ସହଜେ ସ୍ୱଧର୍ମ ଛାଡ଼େ ।(୪୧୬)

ସ୍ୱଧର୍ମରେ ଥାଇ ନିଧନ ହେଲେବି-
ସେଥିକୁ ନଥିବ ଭୟ,
ପରଧର୍ମ ସଦା ଭୟାବହ ଜାଣି-
ନିଜ ଧର୍ମେ ରହିଥାଅ ।(୪୧୭)

ଧର୍ମର ନାମରେ ବହୁ ସମ୍ପ୍ରଦାୟ-
ଚାଲେ ବହୁ ମତବାଦ ,
ମତ ସଂପ୍ରଦାୟ ଧର୍ମେ ନୁହେଁ ଗଣା-
ଜନମାଏ ମତଭେଦ ।(୪୧୮)

ସ୍ୱରୂପ ଦର୍ଶନ ଗୁରୁ ନିର୍ବାଚନ-
ଅତୀବ କଠିନ କାର୍ଯ୍ୟ,
ଗୁରୁ ହେବା ପାଇଁ ଦୀକ୍ଷା ଦେବା ପାଇଁ-
ସିଦ୍ଧି ଲାଭ ଅନିବାର୍ଯ୍ୟ ।(୪୧୯)

ମାନବ ଶରୀର ଈଶ୍ୱର ମନ୍ଦିର-
ବିଜେ ତହିଁ ନାରାୟଣ,
ବାଇଶ ପାହାଚ ଦୁଇପାଦ ତାର-
ହୃଦ ରତ୍ନ ସିଂହାସନ ।(୪୨୦)

ନାଶା କର୍ଣ୍ଣ ଚାରି ମନ୍ଦିର ଦୁଆର-
ଉଦର ରତ୍ନ ଭଣ୍ଡାର,
ଦଧି ନଉତିରେ ପତିତପାବନ-
ସହସ୍ରା ମଥାଟି ତାର ।(୪୨୧)

ମନ୍ଦିର ଆଗରେ ନାଶାଗ୍ର ଗରୁଡ଼-
ଦେଖୁଥାଏ ଭଗବାନ,
ଜିଭଟି ତାହାର ବଡ଼ପଣ୍ଡା ପୁଅ-
ଦନ୍ତ ସେବାକାରୀ ଗଣ ।(୪୨୨)

ମଣିଷର କାନ୍ଧ ଲକ୍ଷ୍ମୀଙ୍କ ଆବାସ-
ପିଠି ବିମଳା କୁଟୀର,
ମୁଖଟି ତାହାର ମୁଖଶାଳା ପୁଣି-
ସାକ୍ଷୀ ଦୁଇ ଆଖି ତାର ।(୪୨୩)

ପୁଣ୍ୟ ଭୂମି ଏହି ଭାରତବର୍ଷରେ-
ଚାରିକୋଣେ ଚାରିଧାମ,
ଦ୍ୱାରିକା, ବଦ୍ରିକା, ରାମେଶ୍ୱର ଆଉ-
ଶ୍ରୀକ୍ଷେତ୍ରଟି ଅନ୍ୟତମ ।(୪୨୪)

ଚାରିଧାମ ମଧ୍ୟେ ପୁରୀ ଭୋଗ କ୍ଷେତ୍ର-
ଦ୍ୱାରିକା ଐଶ୍ୱର୍ଯ୍ୟ କ୍ଷେତ୍ର,
କର୍ମ କ୍ଷେତ୍ର ଲୀଳା କ୍ଷେତ୍ର ରାମେଶ୍ୱର-
ବଦ୍ରିକା ତ୍ୟାଗର ତୀର୍ଥ ।(୪୨୫)

ଆଧ୍ୟାତ୍ମିକ ଭାବ  ମନେ ଧରିଥିଲେ-
ପ୍ରଥମେ ବଦ୍ରିକା ଯିବ,
ଲୋଭନୀୟ ଚିଜ ତ୍ୟାଗ କରିବାକୁ-
କଠୋର ଶପଥ ନେବ ।(୪୨୬)

ଦ୍ୱିତୀୟେ ଦ୍ୱାରିକା ତୀର୍ଥରେ ପହଞ୍ଚି-
ହୋଇଯିବ ଏକାକାର,
ପ୍ରଭୁ ମୋ ଅନ୍ତରେ-ମୁଁ ତାଙ୍କ ଭିତରେ-
ଚିନ୍ତୁଥିବ ନିରନ୍ତର ।(୪୨୭)

କର୍ମକ୍ଷେତ୍ର ଯିବ ରାମେଶ୍ୱର ପୀଠ-
ଧ୍ୟାନ କରି ହରିହର,
ସପ୍ତମୀକେ ଶ୍ରୀକ୍ଷେତ୍ର ପୁରୀ ଧାମ ଆସି-
ଭବୁ ହୋଇଯିବ ପାର ।(୪୨୮)

ମୂଲ୍ୟବାନ ଚିଜ ଥିଲେ ଅଳିଆରେ-
ତାକୁ ତୋଳିବ ଯତନେ,
ସୁକନ୍ୟାଟି ଯଦି ଥିବ ନୀଚ କୁଳେ-
ବୋହୂ କର ସସମ୍ମାନେ ।(୪୨୯)

ବୃକ୍ଷରାଜ ଓସ୍ତ କାକର ମଳରୁ-
ଜନମ ହୁଅଇଁ ଜାଣ,
ସେ ବୃକ୍ଷକୁ ପୁଣି ବିଭୂତି ରୂପରେ-
ଆଦରନ୍ତି ନାରାୟଣ ।(୪୩୦)

କେଡ଼େ ସୁକୁମାର ସୁନ୍ଦର ପଙ୍କଜ-
ପଙ୍କରୁ ଜନମ ହୁଏ,
ସକଳ ସୁଖରୁ ବଞ୍ଚିତ ଶିଶୁ ବି-
ସର୍ବୋଚ୍ଚ ଆସନ ପାଏ ।(୪୩୧)

ଅସମ୍ଭବ କିଛି ନାହିଁ ଏ ସଂସାରେ-
ଲୋଡ଼ା ବୁଦ୍ଧି ଓ ସାହସ,
କୁପୁରୁଷ ସଦା କହେ ହେବନାହିଁ-
ନାହିଁ ତା ଭାଗ୍ୟରେ ଯଶ ।(୪୩୨)

ନକାରାନ୍ତ ଭାବ ସକାରାନ୍ତ ହେଲେ-
ତା ଫଳ ଓଲଟି ଯିବ ,
ମୃତ୍ୟୁକୁ ମଣିଲେ ମୁକ୍ତିର ସୋପାନ-
ଭୟ ତା ବାଟରେ ଥିବ ।(୪୩୩)

ନିଜ ନିନ୍ଦା ଶୁଣି ଭାବିନିଅ ତାକୁ-
କ୍ଷାର ରୂପୀ ସେହି ମିତ୍ର,
ମଇଳା କାଟିବା କାମଟି ତାହାର-
ନିନ୍ଦୁକ ନାମକୁ ମାତ୍ର ।(୪୩୪)

କ୍ଷତି ଯଦି କିଛି ଘଟୁଛି ଜୀବନେ-
ପୁଣି ତୁଚ୍ଛା ଅପମାନ,
ଜାଣିବ ନିଶ୍ଚୟ ଆଗାମୀ ଦିନରେ-
ମିଳିବ ଉଚ୍ଚ ସମ୍ମାନ ।(୪୩୫)

ଥରେ ଜଣେ ସାଧୁ ଭିକ୍ଷାଥାଳ ଧରି-
ଗଲେ ଗୃହସ୍ଥର ଘର,
ଗୃହିଣୀ ଜଣକ କୋପ ଭରି ମନେ-
କରିଲେ ତାଙ୍କୁ ଧିକ୍କାର ।(୪୩୬)

ଧୈର୍ଯ୍ୟ ଧରି ସାଧୁ ପ୍ରଭୁଙ୍କୁ ସୁମରି-
କହିଲେ ବଚନ ଧୀରେ,
ଶୁଣ ମାଆ ମୋର, ଯିବିନି କୁଆଡ଼େ-
ଦିଅ ଯାହା ଅଛି ଘରେ ।(୪୩୭)

କୋପେ ସେହି ନାରୀ ଘର ଲିପା କନା-
ସାଧୁଙ୍କ ଥାଳରେ ଥୋଇ,
କହିଲେ ନିଲଠା ଆସିବୁନି ଦିନେ-
ମରିବୁ ଏ କନା ଖାଇ ।(୪୩୮)

ପ୍ରଭୁଙ୍କର ଇଚ୍ଛା କହି ସାଧୁବାବା-
ଫେରିଲେ ବେଦନା ବହି,
ପଥରେ ଚିନ୍ତିଲେ ଏ କି ହେଲା ପ୍ରଭୁ ?
ମଠରେ ଆହାର ନାହିଁ ।(୪୩୯)

ସକାରାତ୍ମ ଭାବ ଫୁଟିଲା ମନରେ-
ପ୍ରଫୁଲ୍ଲ ହୋଇଲା ଚିତ୍ତ,
ଭାବିଲେ ସେ ମାଆ ଦେଇଅଛି ଯାହା-
ସେତିକି ଆଜି ମୋ ପ୍ରାପ୍ୟ ।(୪୪୦)

ଲିପା କନା ମୋର ନୁହଇଁ ଆହାର-
ହୋଇବ ସଞ୍ଜ ସଳିତା,
କନାଟିକୁ ଧୋଇ ସଫା କରି ସାଧୁ-
ସଜାଇ ଦେଲେ ବଳିତା ।(୪୪୧)

ଘିଅ ଦୀପ ଜାଳି କହିଲେ ପ୍ରଭୁ ହେ-
ଆଣେ ଭିକ୍ଷା ନିଜ ପାଇଁ,
ଆଜି ମାଆ ଜଣେ ତୁମ୍ଭ ପୂଜା ପାଇଁ-
ବଳିତା ଦେଲେ ଯୋଗାଇ ।(୪୪୨)

ପାଚିଲା ଫଳଟି ପଡ଼ିଲା ଗଛରୁ-
ସାଧୁଙ୍କର ପ୍ରାପ୍ୟ ହୋଇ,
ପ୍ରଭୁଙ୍କୁ ସୁମରି ସାଧୁ ସେ ଫଳକୁ-
ଭୋଜନ କରିଲେ ନେଇ ।(୪୪୩)

ମନର ପୋଖରୀ ନିରିମଳ ଥିଲେ-
ଗାଡ଼ିଆ ହୋଇବ ଗଙ୍ଗା,
ମନରେ ସାହସ ଭରି ରହିଥିଲେ-
କୁଶ ଖଣ୍ଡେ ହୁଏ ଡଙ୍ଗା ।(୪୪୪)

ଅପମାନ ଯଦି ପାଇଥିବ କେବେ-
ନିଜ ଦୋଷ ତ୍ରୁଟି ପାଇଁ-
ଭାବ ବିହ୍ୱଳରେ ପର ଲୋକ ପାଶେ-
ପ୍ରଘଟ କରିବ ନାହିଁ ।(୪୪୫)

ମନରେ ଭରିଲେ ଅବିଶ୍ୱାସ ଦ୍ୱନ୍ଦ୍ୱ-
ଭାବନା ହେବ ଜଟିଳ ,
ଦିଶିବ ସଂସାର କୁହେଳିକାମୟ-
ମିଳିବ ସଦା କୁଫଳ ।(୪୪୬)

ସନ୍ଦେହରୁ ଭୟ ଭୟରୁ ବିପଦ-
ବିପଦ ଆଣିବ ଦୁଃଖ,
ଦୁଃଖ ଘେରି ଥିଲେ ବ୍ୟାକୁଳିତ ପ୍ରାଣେ-
ଦୂରେ ରହିଯିବ ସୁଖ ।(୪୪୭)

ଶତ୍ରୁ ହୋଇ ଜଣେ କରୁଥିଲେ କାର୍ଯ୍ୟ-
କରିଦିଏ ସଚେତନ,
ଅନ୍ୟାୟ ଅନୀତି କୁକର୍ମ ଦିଗରେ-
ବେଳୁ କରେ ସାବଧାନ ।(୪୪୮)

ଧାନ ପାଶେ ପାଶେ ବାଲୁଙ୍ଗା ବଢ଼ଇ-
ନୀତିର ପାଶେ ଅନୀତି,
ସୁନୀତିର ପାଶେ ଶତ୍ରୁ ହିଁ ବଢ଼ନ୍ତି-
ଏହି ତ ଦୁନିଆ ରୀତି ।(୪୪୯)

ଯେଉଁ ମନ ନେଇ ଚିନ୍ତା କରୁଥିବ-
ଉପୁଜେ ଭାବ ସେପରି,
ଭାବରୁ ବିଚାର ବିଚାରରୁ କର୍ମ-
ଫଳ ପ୍ରାପ୍ତି ମନ ଧରି ।(୪୫୦)

ମଣିଷ ଶରୀର ମାଟି ରଥଟିଏ-
ଆତ୍ମା ସେ ରଥର ରଥୀ,
ପାଞ୍ଚଟି ଇନ୍ଦ୍ରୀୟ ଦ୍ରୁତଗାମୀ ଅଶ୍ୱ-
ବୁଦ୍ଧି ତହିଁର ସାରଥୀ ।(୪୫୧)

ମନକୁ ଲଗାମ ଦିଏ ଯେଉଁ ନର-
ବିବେକ ଦଉଡ଼ି ଧରି,
ବିଷୟ୍ବ ତା ପାଇଁ ବିଷ ପ୍ରାୟ ହୁଏ-
ଅମୃତ ପଡ଼ଇ ଝରି ।(୪୫୨)

ରଥ ଭାଙ୍ଗିଗଲେ ଅଶ୍ୱର କି କାର୍ଯ୍ୟ-
ରଥୀ ଚାଲିଯିବ ଦୂରେ,
ଅଜର ଅମର ଅକ୍ଷୟ ସେ ରଥୀ-
ଆନ ରଥ ପାଇଁ ଘୂରେ ।(୪୫୩)

ନେଇ ଆଣି ଯିଏ ଥୋଇ ନପାରିଲା-
ବୋକାରେ ହୁଏ ସେ ଗଣା,
ପଚାରି ବିଚାରି ଦେଖି ଚାଲୁଥିଲେ-
ହେବନାହିଁ ବାଟବଣା ।(୪୫୪)

ଆହାରେ ବିହାରେ ବିଦ୍ୟା ଅଧ୍ୟୟନେ-
ଅଭିନୟ ମଞ୍ଚ ପରେ,
ଲଜ୍ଜା କରେ ଯିଏ ଅସଫଳ ହେଇ-
ଜୀବନ ସଂଗ୍ରାମେ ହାରେ ।(୪୫୫)

ଆତ୍ମୀୟ ସ୍ୱଜନ ପ୍ରିୟ ଜନଠାରୁ-
ନେଉଥିବ ଯଦି ଋଣ,
ସେହି ଋଣ ଦିନେ ଭାଙ୍ଗିବ ସଂପର୍କ-
ସାରିଦେବ ଧନ, ମାନ ।(୪୫୬)

ବିପଦେ କାହାକୁ ଧନ ଦେଇଥିଲେ-
ପ୍ରତ୍ୟାଶା ରଖିବ ନାହିଁ,
ପର ଉପକାରେ ଦାନ କରୁଥିବ-
ନିଜ ଶକତିକୁ ଚାହିଁ ।(୪୫୭)

ଅତିଥି ଆସିଲେ ଉପଯୁକ୍ତ ସେବା-
ଶ୍ରଦ୍ଧାରେ ତୋଷିବ ମନ,
ଅତିଥି ଚିହ୍ନାରେ ତ୍ରୁଟି କର ଯଦି-
ଯାଇପାରେ ଧନ, ପ୍ରାଣ ।(୪୫୮)

ଗୋଟିଏ ପାଟିକୁ ଦୁଇଗୋଟି ଆଖି-
ଦୁଇ ପାଶେ ଦୁଇ କାନ,
କହିବ ଅଳପ, ଦେଖିବ ବହୁତ-
ଦୁଇ କାନେ ବେଶି ଶୁଣ ।(୪୫୯)

ଦାନ୍ତ ପଡ଼ିଗଲେ ଚୂଟି ପାଚିଗଲେ-
ମଣିଷ ହୁଏନି ବୁଢ଼ା,
ବୁଢ଼ାଲୋକ ସେହି ଟୋକା ହୋଇ ଯଦି-
କାର୍ଯ୍ୟ ଥାଇ ହୁଏ ଛିଡ଼ା ।(୪୬୦)

ଫୁଲରେ ସୁଗନ୍ଧ ରହିଛି କେଉଁଠି-
ଆଖି ଦେଖିପାରେ ନାହିଁ,
ଶିଶୁର ପ୍ରତିଭା ଲୁଚି ରହିଥାଏ-
ସୁଯୋଗ ପାଇବା ପାଇଁ ।(୪୬୧)

ପଛ କୁହା କଥା ମନେଦିଏ ବ୍ୟଥା-
ବଢ଼ାଏ ସମସ୍ୟା ବେଶି,
ତୃତୀୟ ପୁରୁଷ ଫାଏଦା ଉଠାଏ-
ଶତ୍ରୁପକ୍ଷ ହୁଏ ଖୁସି ।(୪୬୨)

ଠକିବାରେ କେହି ଧୂରନ୍ଧର ହୋଇ-
ଭାବୁଥାଏ ଠକିଦେଲି,
ଜାଣିବ ସେ ବୋକା ଜୀବନକୁ ତାର-
ନରକକୁ ଦେଲା ଠେଲି ।(୪୬୩)

ପରକୁ ଠକିବା, ତାଚ୍ଛଲ୍ୟ କରିବା-
ଅଭ୍ୟାସ ହୁଅଇ ଯାର,
ତାହାରି କୁଫଳେ କଷଣ ଲଭନ୍ତି-
ନିଜ ଲୋକ, ପରିବାର ।(୪୬୪)

ପାଗଳ, ମଦୁଆ, କ୍ରୋଧୀ, ଅପରାଧୀ-
ସଦା ଅନୁଗ୍ରହ ପ୍ରାର୍ଥୀ,
ଏହି ଚାରିଜଣ ହାରିଲେ କହନ୍ତି-
ଲଢେଇରେ ଗଲୁ ଜିତି ।(୪୬୫)

କିଛି ଉପଦେଶ ଏମିତି ରହିଛି-
ଶୁଣିବାକୁ ଲାଗେ ଭଲ,
ଅସଲ ମରମ ବୁଝି ନପାରିଲେ-
ଭଲ ଫଳ ହୁଏ ଭେଲ ।(୪୬୬)

ଚୋର ଭାବିଥାଏ କାଲି ରାତି ପରି-
ସବୁଦିନ ରାତି ଏକା-
ଅପରାଧୀ ସଦା ପ୍ରମାଣ ଛାଡ଼ଇ-
ନିଜ ଆଖି ଖାଏ ଧୋକା ।(୪୬୭)

ଅନ୍ଧ ବିଶ୍ୱାସରେ ଭରା ଏ ସଂସାର
ଏଥିରେ ଅନେକ ବନ୍ଧା-
କେତେ ସୁପୁରୁଷ କରି ପ୍ରତିବାଦ -
ପାଇଛନ୍ତି ଅପନିନ୍ଦା ।(୪୬୮)

କାଳିଆ ବିଲେଇ କାକର ମିଳନ-
ତେଲି, ବ୍ରାହ୍ମଣ ଅଶୁଭ,
ପଛରୁ ଡାକିବା ମାଠିଆ ଦେଖିବା-
ବାଜେକଥା ଭୁଲିଯିବ ।(୪୬୯)

ମନ୍ତ୍ରବଳେ ପୁଣି ବିଷ ଝଡ଼େଇବା-
ଥାଳିଆ, କବାଟ ଚଲା,
ଭୂତ ପ୍ରେତ, ନଖ ଦର୍ପଣ ମାୟାରେ-
ନପଡ଼ିଲେ ଦୁଃଖଗଲା ।(୪୭୦)

ଗୁଣିଆ କାଢ଼ଇ ଜୀଅନ୍ତା ପୋକକୁ-
ଦାନ୍ତ ମୂଳ ବିନ୍ଧୁଥିଲେ,
ସେହି ପୋକ ସବୁ ସଂଗ୍ରହ କରି ସେ-
ଛାଡ଼ିଥାଏ କଉଶଳେ ।(୪୭୧)

ନବେଭାଗ ସାପ ବିଷହୀନ ଜାଣି-
ଗୁଣିଆ ମିଛରେ ଝାଡ଼େ,
ଭୟଲୁ ରୋଗୀଟି ଉଠି ବସେ ଯେବେ-
ମୃତ୍ୟୁଭୟ ତାକୁ ଛାଡ଼େ । (୪୭୨)

ଭୟାଳୁ ଜୀବ ଯେ ବିପଦ ପୂର୍ବରୁ-
ଆକ୍ରମଣ କରି ଦିଏ,
ପ୍ରକୃତ ସାହସୀ କ୍ଷମା ଦେଇ ଜାଣେ-
ବିପଦେ ନିଶ୍ଚଳ ଥାଏ ।(୪୭୩)

ନିମନ୍ତ୍ରଣ ଆଶା ରଖିବ ବନ୍ଧୁଠୁ-
ସୁଖ ସମୃଦ୍ଧିର ବେଳେ,
ଦୁଃଖ ବିପଦରେ ବନ୍ଧୁ ଘରେ ଯାଇ-
ପହଞ୍ଚିବ ବଳେ ବଳେ ।(୪୭୪)

ପ୍ରତ୍ୟେକ ପ୍ରାଣୀର ସହଜାତ ଭୟ-
ସୁରକ୍ଷା କବଚ ଜାଣ,
ଭୟ ଅତି ହେଲେ ପ୍ରାଣୀ ଶରୀରରୁ-
ବଳେ ଛାଡ଼ିଯାଏ ପ୍ରାଣ ।(୪୭୫)

ଭୋଗ କରୁଥିଲେ ରୋଗ ଭୟ ଥାଏ-
ଉଚ୍ଚେ ଥିଲେ ନୀଚ ଭୟ,
ଧନ ଥିଲେ ପୁଣି ଚୋର ଭୟ ଥାଏ-
ଅନ୍ୟାୟୀକୁ ଭୟ ନ୍ୟାୟ ।(୪୭୬)

ଗୁଣୀ ଜନେ ସଦା ଦୁର୍ଜ୍ଜନକୁ ଭୟ-
ଯୁଦ୍ଧରେ ଶତ୍ରୁର ଜୟ,
ରୂପଜୀବୀ ପାଇଁ ବାର୍ଦ୍ଧକ୍ୟଟି ଭୟ-
ଶରୀରକୁ ମୃତ୍ୟୁ ଭୟ ।(୪୭୭)

ଶାସ୍ତ୍ରକାର ପାଇଁ ବିବାଦର ଭୟ-
ମାନୀଠାରେ ମାନ ହାନୀ,
ବଳବାନ ଭୟ ହାରିଯିବି କାଳେ-
ଅଜ୍ଞାନ ପାଖରେ ଜ୍ଞାନୀ ।(୪୭୮)

ସାଂସାରିକ ବସ୍ତୁ ଚାଲିଯିବ ଭାବି-
ମନରେ ଆସଇ ଭୟ,
ଭୟ କମି ଯାଏ ବିଭୁଙ୍କ ଚରଣେ-
ଯିଏ ରଖିଥାଏ ଲୟ ।(୪୭୯)

ସମର୍ପଣ ଭାବ ଯାହାର ଯେତିକି-
ସେତିକି ସୁରକ୍ଷା ତାର,
ସଂପୂର୍ଣ୍ଣ ଭରସା କଲେ ଯାଜ୍ଞସେନୀ-
ହଟିଲା ବିପଦ ଘୋର ।(୪୮୦)

ଦୁରାଚାରୀ ଜନ କହେ ଏ ସଂସାରେ-
ଭଗବାନ କେହି ନାହିଁ,
ସଦାଚାରୀ କହେ ସବୁଠି ପ୍ରଭୁଙ୍କୁ-
ଅନୁଭବ କରେ ମୁହିଁ ।(୪୮୧)

ଈଶ୍ୱର କରୁଣା ଅନୁଭବି ହୁଏ-
ଉଦାର ଥିଲେ ହୃଦୟ,
ଧରି ପାରେ ନାହିଁ ଅମୃତ ଧାରାକୁ-
ମୁଗୁନି ପଥର ପ୍ରାୟ ।(୪୮୨)

ବିଜୁଳି ଶକ୍ତିରେ ବିଭିନ୍ନ ଯନ୍ତ୍ରରେ-
କାର୍ଯ୍ୟ ହୁଏ ଭିନ୍ନ ଭିନ୍ନ,
ବିଭୁଙ୍କ କୃପାରେ ପ୍ରାଣୀ ଜଗତର-
ଚଳଇ ଶରୀର ମନ ।(୪୮୩)

ବିଜୁଳିରେ କିବା ଈଶ୍ୱର କୃପାରେ-
ବିଷମତା ନାହିଁ କିଛି,
ଯନ୍ତ୍ରର ଶକତି, ପ୍ରାଣୀର ଭକତି-
ନିଜ କାର୍ଯ୍ୟ ନିଏ ବାଛି ।(୪୮୪)

କ୍ରୋଧ ହିଁ ପ୍ରାଣୀର ପ୍ରଥମ ବଇରୀ-
ନିଜର କରଇ କ୍ଷତି,
କ୍ରୋଧରୁ ବିସ୍ମୃତି ତହିଁରୁ ପ୍ରଳାପ-
ଭ୍ରଷ୍ଟ ହୋଇଯାଏ ମତି ।(୪୮୫)

ସ୍ୱାର୍ଥବୁଦ୍ଧି ନିଜ ସ୍ୱାର୍ଥ ସିଦ୍ଧି ପାଇଁ-
ଅନ୍ୟକୁ ଦିଅଇ କଷ୍ଟ,
କଠୋର ହୃଦୟେ ନିଜକଥା ଦେଖେ-
ହିଂସା ବଳେ କରେ ନଷ୍ଟ ।(୪୮୬)

ସୁଖର ସହିତ ଶାନ୍ତି ମିଶିଥିଲେ-
ଜୀବନ ହୁଏ ସୁଗମ,
ସୁଗମର ପଥ ପାଇବାକୁ ହେଲେ-
ନିଜେ ହୋଇବ ନରମ ।(୪୮୭)

ଯାହା ମୋତେ ଆଜି ହେଇଲା ପ୍ରାପତ-
ଜାଣିବ ସେ ପ୍ରାପ୍ୟ ମୋର,
ଦୁଃଖ ଅପମାନ ପାଇଥିଲେ କିଛି-
ହେବନାହିଁ ଦୁଃଖ ଭାର ।(୪୮୮)

ଆଗାମୀ କାଲିକୁ ଆସିପାରେ ଖୁସି-
ସମ୍ମାନ ଉଚ୍ଚ ଆସନ,
ଯାହା ମାଧ୍ୟମରେ ହୋଇବ ପ୍ରାପତ-
ନିମିତ୍ତ ମାତ୍ର ସେ ଜାଣ ।(୪୮୯)

ଜନମରୁ କେହି ଶତ୍ରୁ ହୋଇ କାର-
ଆସି ନଥାଏ ସଂସାର,
ସ୍ୱାର୍ଥରେ ବାଧକ ହୋଇବ ଯେ ପ୍ରାଣୀ-
ହେଲା ସେ ବଇରୀ ତାର ।(୪୯୦)

ନିଜ କର୍ତ୍ତବ୍ୟକୁ ଉପଭୋଗ କଲେ-
ସୁଖ ହେବନାହିଁ ଊଣା,
ବିନା ଶ୍ରମେ ଯାହା ଉପାର୍ଜନ ହୁଏ-
ତାହା ଚୋରି ସଙ୍ଗେ ଗଣା ।(୪୯୧)

ଦୁଇ ଆଖି ମେଲି ଦେଖ ଦୁନିଆକୁ-
ଦୁଇ କାନ ଖୋଲି ଶୁଣ,
ପାଟି ଖୋଲି ଦୁଃଖ ଜଣାଅ ପ୍ରଭୁଙ୍କୁ-
ଉଚ୍ଚେ କର ଜୟଗାନ ।(୪୯୨)

ମେଘ ଘଡ଼ ଘଡ଼ି ଉଠିଲେ ଆକାଶେ-
ବଜ୍ର କରେ ଆକ୍ରମଣ ,
ଡେଙ୍ଗା ବୃକ୍ଷ ଆଉ ଉଚ୍ଚ ଜାଗା ଛାଡ଼ି-
ଦେଖ ନିରାପଦ ସ୍ଥାନ ।(୪୯୩)

ଅଜଣା ନଈରେ ପାଦ ଦେଉଥିଲେ-
ପାଶେ ଥିବ କେହି ଜଣେ;
ଅସ୍ତ୍ର ଖଣ୍ଡେ ଧରି ସାବଧାନେ ଥିବ-
ଯାଉଥିବ ଯଦି ବଣେ ।(୪୯୪)

ମନକୁ ଚଞ୍ଚଳ କରନାହିଁ କେବେ-
ଗାଡ଼ିର ଚାଳକ ହୋଇ,
ବିଳମ୍ବରେ ପଛେ ପହଞ୍ଚିଲେ ଭଲ-
ସୁଖ ସୁବିଧାରେ ଥାଇ ।(୪୯୫)

ଜୀବ ପ୍ରତି ଯାର ନାହିଁ ଦୟା ଭାବ-
ଜାଣିବ ଚଣ୍ଡାଳ ସେହି,
ପ୍ରାଣୀ, ବୃକ୍ଷ ଲତା ଦୁଃଖ ଯିଏ ବୁଝେ-
ତାକୁ ହିଁ ମଣିଷ କହି ।(୪୯୬)

ଭେଟିବାର ଥିଲେ କାହାକୁ ସେଇଠି-
ଘଡ଼ିଏ ଆଗରୁ ଥିବ,
ମୁହୂର୍ତ୍ତେ ବିଳମ୍ବ ଘଟିଲେ ହାତରୁ-
ହେବା କାର୍ଯ୍ୟ ଖସିଯିବ ।(୪୯୭)

ମଣିଷର ମାଟି ଘଟ ଛୁଟିଗଲେ-
ମିଶିଯାଏ ପଞ୍ଚଭୂତେ,
ସୁପୁରୁଷ ଯଶ ରହିଯାଏ ପଛେ-
ଯିଏ ମରେ ପରହିତେ ।(୪୯୮)

ଦେଶ ଜାତି କଥା ଥାଏ ଯା ମନରେ-
ସମାଜ ସଂସ୍କାରେ ରତ,
ସ୍ୱାର୍ଥତ୍ୟାଗୀ ବୀର ଦେଶର ସେବକ-
ତାଙ୍କୁ କୋଟି ଦଣ୍ଡବତ ।(୪୯୯)

ସୁନ୍ଦର ଏ ଧରା ସୁନ୍ଦର ପ୍ରକୃତି-
ଅମୃତମୟ ଏ ସୃଷ୍ଟି,
ଦେଖ ଆନନ୍ଦର ଫିଟିଛି ଫୁଆର-
ଖୋଲ ଅମୃତର ଦୃଷ୍ଟି ।(୫୦୦)

-ଜୟ ଜଗନ୍ନାଥ-

୩୦ ।୦୫ ।୦୭

# ଜୀବନ ଭାଗବତ



**ଡକ୍ଟର କୃତ୍ତିବାସ ନାୟକ,** ଜନ୍ମ : ୦୨-୦୩-୧୯୫୫, ଗ୍ରାମ : ଏକତଲା, ରାଜକନିକା । ଓଡ଼ିଆ ସାହିତ୍ୟର ଏକ ସଶ୍ରଦ୍ଧ ଉଚ୍ଚାରଣ । ସାହିତ୍ୟର ବିଭିନ୍ନ ବିଭାବରେ କଲମ ଚଳାଇ ସେ ପ୍ରତ୍ୟେକ କ୍ଷେତ୍ରରେ ସଫଳତା ହାସଲ କରିଛନ୍ତି । ୧୯୮୩ ମସିହାରୁ ସେ ଆକାଶବାଣୀର ଜଣେ ସ୍ୱୀକୃତି ପ୍ରାପ୍ତ ଗୀତିକାର । ବାଲିମେଲା ଓ ଜୟପୁରରୁ ପ୍ରକାଶିତ ଶିଶୁପତ୍ରିକା 'ଶିଶୁ ନୟନ୍ନ','ଆମେ ଶିଶୁ' ଓ 'ଶିଶୁ ରାଇଜ'ର ସେ ଥିଲେ, ସଫଳ ସଂପାଦକ । ୧୯୮୯ ମସିହାରୁ ସେ ଆକାଶବାଣୀର ଜଣେ ବରିଷ୍ଠ ଅଧିକାରୀ ଭାବରେ କାର୍ଯ୍ୟରତ । ଶିଶୁ ସାହିତ୍ୟ ପାଇଁ ସେ ୧୯୯୨ ଓ ୧୯୯୯ ମସିହାରେ ଜାତୀୟ ଶିଶୁ ସାହିତ୍ୟ ପୁରସ୍କାର ଲାଭ କରିଛନ୍ତି । ତାଙ୍କର ଉପନ୍ୟାସ 'ଶୁଭଲକ୍ଷ୍ମୀ'ର ହିନ୍ଦୀ ସଂସ୍କରଣ ପାଇଁ ସେ ୨୦୦୨ ବର୍ଷର ଜାତୀୟ ପୁରସ୍କାରରେ ପୁରସ୍କୃତ ହୋଇଛନ୍ତି । ଜ୍ଞାନ ସଂଗ୍ରହ, ଉତ୍କଳ ଦର୍ପଣ, ଢେଙ୍କାନାଳ ଦର୍ପଣ, ଆଜିର କୋରାପୁଟ, କେନ୍ଦୁଝର ଦର୍ପଣ, ସମ୍ବଲପୁର ପ୍ରତିଭା ଓ ରାଉରକେଲା ଦର୍ପଣ ପ୍ରଭୃତି ସୂଚନା ସାହିତ୍ୟ ସମେତ ତାଙ୍କର 'କୂଳବୋହୂ' ଉପନ୍ୟାସ ଓ ୪ ଖଣ୍ଡ ଗୀତି କବିତା ପୁସ୍ତକ ପ୍ରକାଶ ପାଇ ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଛି । ଅଦ୍ୟାପି ତାଙ୍କର ୮୫ ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି ।


ISBN 81-87968-27-3
9788187968276